ସମ୍ପାଦକଙ୍କର ବୋଧହୁଏ ଚୁମ୍ବକୀୟ ବ୍ୟକ୍ତିତ୍ୱ ନ ଥିଲା ।

'ବିଶ୍ୱ ସାହିତ୍ୟ ପରିଷଦ'ର ଭାଙ୍ଗିଲା, କିଛି ପରିମାଣରେ ହଙ୍କ ହଙ୍କ ହୋଇ ଆଗେଇ ଚାଲିବାର ଆଗ୍ରହ ମଧ୍ୟ । ଛ' ମାସପରେ ୧୯୫୨ ବେଳକୁ ଆଉ ଗୋଟିଏ ପରିଷଦ ମୁଣ୍ଡ ଟେକିଲା ପୁଣି ମୋରି ଚେଷ୍ଟାରେ-ନାମ 'ସପ୍ତର୍ଷି', କ୍ଷୁଦ୍ରତମ, ମାତ୍ର ସାତ ଜଣ ସଭ୍ୟଙ୍କୁ ଘେନି ଏହା ଗଠିତ ହେଲା ; ସମସ୍ତେ ଋଷି ବା ନକ୍ଷତ୍ର ପଦବାଚ୍ୟ ନୋହିଲେ ବି । ଘରୋଇଭାବହିଁ ଏହାରମୁଖ୍ୟ ବୈଶିଷ୍ଟ୍ୟ । ଏଥିରେ ନଥିଲା କିଛି ମାସିକ ଚାନ୍ଦା କିମ୍ବା କିଛି ସମ୍ବିଧାନ ବା ନିୟମ । ଏହାର କେହି ସଭାପତି ବା ସମ୍ପାଦକ ନ ଥିଲେ ; ସମସ୍ତ ସଭ୍ୟ-ପରିଷଦର ସମାନ ପଦ ଅଧିକାରୀ । ପରିଷଦର ବୈଠକ ଲାଗି ନିର୍ଦ୍ଦିଷ୍ଟ ସ୍ଥାନ ନ ଥିଲା । ସଭ୍ୟ ନିଜ ଘରେ ଏହି ବୈଠକ ଡକାଉଥିଲେ, ସଭ୍ୟମାନଙ୍କୁ ଚା ପାନ କରାଉ ଥିଲେ, ତା ମଧ୍ୟରେ କୌଣସି ସଭ୍ୟ ନିର୍ଦ୍ଦିଷ୍ଟ ବିଷୟରେ ଆଲୋଚନା କରୁଥିଲେ । ଏହି ପରିଷଦଟି ବର୍ଷାଧିକ କାଳ ସଫଳ ଭାବେ ଚାଲୁରହିଲା । ଜଣେ ସଭ୍ୟ ଏହା ମୋଟେ ନ ଡ଼କାଇବାରୁ ଓ ଶାଳୀନତା ଦୃଷ୍ଟିରୁ କେହି ତାଙ୍କୁ କିଛି ନହିବାରୁ 'ସପ୍ତର୍ଷି' ଭାଙ୍ଗିଗଲା ।

ବିଦ୍ୟାଭବନର ଅଧ୍ୟକ୍ଷ ଡକ୍‌ଟର ପ୍ରବୋଧଚନ୍ଦ୍ର ବାଗ୍‌ଚୀ ମଧ୍ୟ ନିଜ ବାସଭବନରେ ଏହିପରି ଏକ ବୈଠକ ଡକାଉଥିଲେ; ସେଠି ୩୦/୪୦ ଜଣ ସଭ୍ୟ ଉପସ୍ଥିତ ହେଉଥିଲେ, କିନ୍ତୁ ତାହା ମଧ୍ୟ ବେଶିଦିନ ଚାଲୁରହି ପାରିଲାନାହିଁ ।

ସରକାରଙ୍କ ସଙ୍ଗେ ମତ ଅମେଳ ହେବାରୁ ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ ଚାକିରୀ ମୋହ ତ୍ୟାଗ କରି ଆସି ଶାନ୍ତିନିକେତନରେ ବାସ କରୁଥିଲେ । ରବୀନ୍ଦ୍ରନାଥଙ୍କ ପରେ ଶାନ୍ତିନିକେତନରେ ଏତେ ବଡ଼ ସାହିତ୍ୟିକ ବ୍ୟକ୍ତିତ୍ୱ ଆଉ ନ ଥିଲା । ତାଙ୍କ ଗୃହ ପ୍ରକୃତରେ ଏକ ସାରସ୍ୱତ ତୀର୍ଥ ହୋଇଯାଇଥିଲା । ସେ ମଧ୍ୟେ ମଧ୍ୟେ କେତେକ ବିଶିଷ୍ଟ ସାହିତ୍ୟକଙ୍କୁ ଡାକି ନିଜ ଗୃହରେ ସାହିତ୍ୟସଭା କରାଉଥିଲେ । କବିତା ଆବୃତ୍ତି ମଧ୍ୟରେ ସାହିତ୍ୟ ଆଲୋଚନା ହେଉଥିଲା, ଅନ୍ନଦାଶଙ୍କର ସାହିତ୍ୟିକମାନଙ୍କୁ ଜଳଯୋଗରେ ଆପ୍ୟାୟିତ କରୁଥିଲେ ।

ମୁଖ୍ୟତଃ ତାଙ୍କରି ନେତୃତ୍ୱରେ ଶାନ୍ତିନିକେତନରେ ପୂର୍ବବଙ୍ଗ ଓ ପଶ୍ଚିମ ବଙ୍ଗ ସାହିତ୍ୟ ସମ୍ମେଳନ ଅନୁଷ୍ଠିତ ହୋଇଥିଲା, ବୋଧହୁଏ ୧୯୫୧ରେ । ମୁଁ ଏହି ସମ୍ମିଳନୀରେ 'ବଙ୍ଗଳା ଓ ଓଡ଼ିଆ ଲୋକ-ସାହିତ୍ୟ' ସଂପର୍କରେ ଏକ ତୁଳନାତ୍ମକ ଆଲୋଚନା ପାଠ କରିଥିଲି । ଭାରତ ଭଙ୍ଗପରେ ସାଂସ୍କୃତିକ ସମ୍ମେଳନ ଲାଗି ଏହା ପ୍ରଥମ ଚେଷ୍ଟା ।

୧୯୫୩,ରେ ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦ ସଂଗଠିତ ହେଲା । ମୁଁ ହେଲି ସ୍ଥାୟୀ ସଭାପତି, ସଂପାଦକ କୌଣସି ଛାତ୍ର । ଛାତ୍ରୀଛାତ୍ରୀ; ଅଧ୍ୟାପକମାନେ କବିତା, ଗଳ୍ପ, ଭ୍ରମଣକାହାଣୀ, ପ୍ରବନ୍ଧ ସବୁ ଲେଖିଆଣୁଥିଲେ; ସେସବୁ ପରିଷଦରେ ପଠିତ ବା ଆଲୋଚିତ ହେଉଥିଲା । ସଂଖ୍ୟା ଊଣାଥିବାରୁ ପ୍ରାୟ ପତ୍ୟେକ ସଭ୍ୟଙ୍କୁ କିଛି କିଛି ଲେଖିବାକୁ ହେଉଥିଲା । ପରିଷଦର ପ୍ରେରଣାରେ ନିତାନ୍ତ ଅନାଡ଼ି ମଧ୍ୟ ଅଳ୍ପକାଳ ମଧ୍ୟରେ ଜଣେ ଲେଖକ ହୋଇ

ବାହାରୁଥିଲା । ଲେଖାପାଠର ମଧ୍ୟେ ମଧ୍ୟେ ଗୋଟିଏ ସଂଗୀତ ବୋଲା ଯାଉଥିଲା । ବେଳେବେଳେ ସଙ୍ଗୀତର ପୂରା ଆସର ମଧ୍ୟ ବସୁଥିଲା । ପରିଷଦର ସଭ୍ୟମାନେ ଗ୍ରୀଷ୍ମବା ପୂଜା ଛୁଟୀ ଆଗରୁ ବଣଭୋଜି କରିଯାଉଥିଲେ । ବିଶ୍ୱଭାରତୀରେ ଶିଶୁ ଭବନର 'ସାହିତ୍ୟିକା' କୁ ଛାଡ଼ିଦେଲେ ଓଡ଼ିଆ ସାହିତ୍ୟ ପରିଷଦ ଏକମାତ୍ର ସୁପରିଚାଳିତ ଓ ନିୟମିତ ପରିଷଦ ଥିଲା । ବଙ୍ଗଳା ବା ହିନ୍ଦୀ, ସାହିତ୍ୟ ପରିଷଦ ବର୍ଷକେ ଥରେ ଦୁଇଥର ବସେ । କିନ୍ତୁ ଓଡ଼ିଆ ସାହିତ୍ୟ ପରିଷଦ ବୈଠକ ବର୍ଷକେ ପ୍ରାୟ ୫୦ଟି ହେଉଥିଲା ଓଡ଼ିଶାରୁ ବିଶିଷ୍ଟ ସାହିତ୍ୟକ ଗଲେ ସେ ଏହି ପରିଷଦ ଦ୍ୱାରା ଶାନ୍ତିନିକେତନୀ ରୀତିରେ ସଂବର୍ଦ୍ଧିତ ହେଉଥିଲେ ମଧ୍ୟେ ମଧ୍ୟେ ଏହି ପରିଷଦରେ ନିମନ୍ତ୍ରିତ ହୋଇ ହିନ୍ଦୀ, ବଙ୍ଗଳା, ମରହଟ୍ଟୀ ବିଶିଷ୍ଟ ସାହିତ୍ୟିକ ମାନେ ଭାଷଣ ଦେଉଥିଲେ । ପରିଷଦର ଆନୁକୂଲ୍ୟରେ ଓଡ଼ିଆ ଛାତ୍ର-ଛାତ୍ରୀମାନଙ୍କ କଳାପ୍ରଦର୍ଶନୀ ହେଉଥିଲା ଓଡ଼ିଆ ନାଟକର ଅଭିନୟ ହେଉଥିଲା । ପରିଷଦ ତରଫରୁ ସମ୍ମେଳନ ଡ଼କାଯାଇ ଓଡ଼ିଆ ସାହିତ୍ୟ, ଓଡ଼ିଶୀ ସଂଗୀତ ଓ ନୃତ୍ୟର ସୁପରିଚୟ ପ୍ରଦାନ କରାଯାଉଥିଲା ।

ସେଥିଲାଗି ଓଡ଼ିଶାରୁ କେତେକ ନର୍ତ୍ତକ-ନର୍ତ୍ତକୀ, ବାଦକ ଓ ଗାୟକଙ୍କୁ ନିମନ୍ତ୍ରଣ କରାଯାଉଥିଲା । ବିଶ୍ୱଭାରତୀର, ବିଶେଷତଃ ବିଦ୍ୟାଭବନର ଏମ୍.ଏ.ଓ ଅନର୍ସର ଛାତ୍ରଛାତ୍ରୀମାନେ ବିଶ୍ୱଭାରତୀରୁ ଜଣେ ଜଣେ ସୁପରିଚିତ ସାହିତ୍ୟକ ଓ ସାହିତ୍ୟିକା ହୋଇ ଫେରୁଥିଲେ । କିନ୍ତୁ ଆମ ସଂଖ୍ୟା ଶୋଚନୀୟ ଭାବେ କମିଗଲା । ଓଡ଼ିଶା ସରକାର ଖଲ୍ଲିକୋଟରେ କଳା ବିଦ୍ୟାଳୟ ଖୋଲିବା ଫଳରେ କଳାପଢ଼ିବା ଲାଗି ଆଉ ବେଶି ଛାତ୍ର ଶାନ୍ତିନିକେତନ ଆସିଲେ ନାହିଁ । ବିଦ୍ୟାଭବନରେ ଦୁଇ ଚାରିଜଣ ଛାତ୍ର ମାତ୍ର ।

ଶାନ୍ତିନିକେତନରେ ଯେଉଁମାନେ ଅଛନ୍ତି, ଯେଉଁମାନେ ଅଧ୍ୟୟନ ବା ଅଧ୍ୟାପନା ପରେ ଚାଲି ଯାଇଛନ୍ତି, ସେମାନଙ୍କ ଏକତ୍ରାବସ୍ଥାନର ଉପାୟ କଣ ? ସମ୍ମେଳନ ବହୁ ବ୍ୟୟସାପେକ୍ଷ ; ଗୋଷ୍ଠୀ ଫଟୋଟିଏ ନେବା ମଧ୍ୟ ସମ୍ଭବ ନୁହେଁ । ଆମେ ଥିଲୁ ଗୋଟିଏ ପରିବାର, ସମଦୁଃଖୀ । ସମ୍ବନ୍ଧ ଏତେ ନିବିଡ଼ ଯେ ଜଣକ ସଙ୍ଗେ ଜଣକର ସାକ୍ଷାତ ନ ହେଲେ ଅଚଳ । ଏଭଳି ଭ୍ରାତୃବନ୍ଧନ ଅନ୍ୟତ୍ର ସୃଷ୍ଟି ହେବା ସହଜ ନୁହେଁ । ଏଇ ଏକାତ୍ମତାରୁ ପ୍ରାଣବନ୍ତ ସାହିତ୍ୟର ସୃଷ୍ଟି ହୁଏ । ଅଧ୍ୟାପକ ଓ ଛାତ୍ର-ଛାତ୍ରୀଙ୍କର ସହଯୋଗ ଓ ସମପ୍ରାଣତାର ପ୍ରତୀକ ରୂପେ 'ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା' ର ପରିକଳ୍ପନା ଓ ବହୁ ପରିଶ୍ରମ ପରେ ଏହା ସାର୍ଥକ ରୂପ ଗ୍ରହଣ କଲା । 'ଓଡ଼ିଶା ସାହିତ୍ୟ ଏକାଡ଼େମୀ' ୧୯୬୨ ରେ ଏହା ପ୍ରକାଶ କରିଥଲେ । ଏହିପୁସ୍ତକର ବିକ୍ରୟଲବ୍ଧ ଅର୍ଥ ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦର ମୂଳପୁଞ୍ଜି ହୋଇଥିଲା । ଏଥିରେ କବିତା, ଉପନ୍ୟାସ, କ୍ଷୁଦ୍ରଗଳ୍ପ, ଏକାଙ୍କିନା, ନାଟକ, ଭ୍ରମଣକାହାଣୀ ସମ୍ପର୍କରେ ସମାଲୋଚନାମାନ ପ୍ରକାଶିତ ହୋଇଥିଲା ।

ଅନ୍ୟାନ୍ୟ ଶୁଭଙ୍କର କାର୍ଯ୍ୟ ମଧ୍ୟରେ ଅନ୍ନଦାଶଙ୍କର ରାୟଙ୍କର ଓଡ଼ିଆ ଲେଖାସବୁ

ପରିଷଦର ସଭ୍ୟମାନେ ସଂକଳନ କରିଥିଲେ । ତାହା 'ସବୁଜ ଅକ୍ଷର' ନାମରେ ପ୍ରକାଶିତ ହୋଇଥିଲା ।

ଶାନ୍ତିନିକେତନ ର ରହଣିକାଳ ମଧ୍ୟରେ ଅଧ୍ୟାପକ ନରେନ୍ଦ୍ରନାଥମିଶ୍ରଙ୍କ ପ୍ରଚେଷ୍ଟାରେ 'କୁଞ୍ଜବିହାରୀ ସଞ୍ଚୟନ' ଦୁଇଟି ଭାଗ ପ୍ରକାଶିତ ହୋଇଥିଲା । ପ୍ରଥମଭାଗ ୧୯୫୭, ଦ୍ୱିତୀୟ ଭାଗ - ୧୯୬୦ ଓ ତୃତୀୟଭାଗ ଶାନ୍ତିନିକେତନ ଛାଡ଼ିବା ପରେ ୧୯୬୩ରେ ପ୍ରକାଶିତ ପାଇଥିଲା

ଶାନ୍ତିନିକେତନରେ ମୁଁ ପ୍ରାୟ ୧୧ବର୍ଷ (୧୯୫୦ରୁ୧୯୬୧) ରହିଥିଲି । ଏ ଏଗାର ବର୍ଷ ମୋ୍ ଜୀବନର ସୁବର୍ଣ୍ଣ ଯୁଗ । ବହୁ ଅଧ୍ୟୟନ, ଭ୍ରମଣ ଓ ବିପୁଳ ବ୍ୟକ୍ତିତ୍ୱ ସଂସ୍ପର୍ଶରେ ଚିତ୍ତ ପ୍ରଶସ୍ତତର ହୋଇଥିଲା, ସୃଷ୍ଟିଶକ୍ତି ବିଚିତ୍ର ଧାରାରେ ପ୍ରବାହିତ ହୋଇଥିଲା-କାବ୍ୟ କବିତାରେ, ଲୋକକଥା ବା ଭ୍ରମଣ କାହାଣୀରେ-ସମାଲୋଚନା ବା ଗବେଷଣାମୂଳକ ପ୍ରବନ୍ଧରେ । ମୋ ତତ୍ତ୍ୱାବଧାନରେ 'ଆଧୁନିକ କାବ୍ୟଧାରା' ସମ୍ବନ୍ଧରେ ପ୍ରବନ୍ଧ ଲେଖି ନରେନ୍ଦ୍ର ପି.ଏଚ.ଡ଼ି.ଡ଼ିଗ୍ରୀ ଲାଭକରିଥିଲେ । ଚିନ୍ତାଶୀଳ ପ୍ରବନ୍ଧ ରଚନାରେ ନରେନ୍ଦ୍ର ସୁନିପୁଣ ଥିଲେ । ଶାନ୍ତଶିଷ୍ଟ, ବିନୟୀ, ଚିର ସାଧନାନିବିଷ୍ଟ । ଅଷ୍ଟମଶ୍ରେଣୀରୁ ଅଦ୍ୟାବିଧି ମୋ ସହିତ ତାଙ୍କର ସଂପର୍କ ସ୍ନେହଶୀଳ ଓ ନିବିଡ଼ । ଡକ୍ଟର ଶ୍ରୀନିବାସ ମିଶ୍ର (ମୋ ତତ୍ତ୍ୱାବଧାନରେ ଡ଼କ୍ଟର ଡ଼ିଗ୍ରୀ ଲାଭ କରିଥିଲେ) ଙ୍କ ପରେ ସେ ଓଡ଼ିଆ ସ୍ନାତକୋତ୍ତର ବିଭାଗର ମୁଖ୍ୟ ଅଧ୍ୟାପକ ହୋଇଥିଲେ ।

* * * *

ଶାନ୍ତିନିକେତନରେ ମୋର ଯାହା କରିବାର କଥା ବୋଧେ ଶେଷ ହୋଇଥିଲା । ଓଡ଼ିଆ ବିଭାଗ ସୁପ୍ରତିଷ୍ଠିତ, ତେଣୁ ଓଡ଼ିଶାକୁ ଫେରିଯିବା ସ୍ୱାଭାବିକ-ଈଶ୍ୱରନିର୍ଦ୍ଦେଶଏ ।

* * * *

୧୯୬୧ ମସିହାରେ ମୋ ରହଣି କାଳ ଆଉ ବର୍ଷେ ବଢ଼ାଇବା ଲାଗି ଦରଖାସ୍ତ ଦେବାକୁ ମୋ କଲମ ଚାଲିଲାନାହିଁ । ସୁଧୀରଞ୍ଜନ ଦାସ ସେତେବେଳେ ଉପାଚାର୍ଯ୍ୟ ।

ସୁଧୀରଞ୍ଜନ ଅତିଥିବତ୍ସଳ, ଅମାୟିକ କିନ୍ତୁ କର୍ତ୍ତବ୍ୟ-କଠୋର ଥିଲେ ସେ । ଏକାନ୍ତ ନିରଳସ । ସତୁରି ବର୍ଷ ବୟସରେ ରାତି ଚାରିଟାରୁ ଉଠି ପ୍ରାତଃସ୍ନାନ ସାରି ସେ ସକାଳ ଛଟାରେ 'ଗୌର ପ୍ରାଙ୍ଗଣ'ରେ 'ବୈତାଳିକ'ରେ ଯୋଗ ଦେଉଥିଲେ; ତାପରେ ରୋଷେଇଶାଳକୁ ଯାଇ ଛାତ୍ର-ଛାତ୍ରୀଙ୍କ ଖିଆପିଆ ତନଖୁଥିଲେ, ସେମାନଙ୍କ ହାନିଲାଭ ବୁଝୁଥିଲେ, କର୍ମୀମାନଙ୍କ ସହିତ ଆଳାପ ଆଲୋଚନା କରୁଥିଲେ ।

* * * *

ମୁଁ ଜଣେ ପୁରୁଖା କର୍ମୀ ପ୍ରତିଷ୍ଠାବନ୍ତ, ଓଡ଼ିଆ ବିଭାଗର ପ୍ରତିଷ୍ଠାତା, ବିକାଶକର୍ତ୍ତା । ତେଣୁ ମୋତେ ବିଦାୟ ଦେବାଲାଗି ସମଗ୍ର ବିଶ୍ୱ ବିଦ୍ୟାଳୟ ପକ୍ଷରୁ ସେ ଗୋଟିଏ ବିଦାୟ-ସଭାର ବ୍ୟବସ୍ଥା କରିଥିଲେ । ଏହା ବିଶ୍ୱଭାରତୀରେ ଅବଶ୍ୟ ଅଭିନବ । ଅତୀତର ବିଦାୟୀ ସ୍ୱଷ୍ଟ

ବିଭାଗରୁ ବିଦାୟ ଲାଭ କରୁଥିଲା ବେଳେ ସମସ୍ତ ବିଶ୍ୱବିଦ୍ୟାଳୟର ବିଦାୟ-ସମ୍ବର୍ଦ୍ଧନା ମୋ ପକ୍ଷରେ ଏକ ଗୌରବ ଲାଭ । ସ୍ୱୟଂ ଉପାଚାର୍ଯ୍ୟ ଏଥିରେ ପୁରୋଧା ହୋଇଥିଲେ । ବିଦ୍ୟାଭବନର ଅଧ୍ୟକ୍ଷ (ପରେ ଉପାଚାର୍ଯ୍ୟ) ଡ଼କ୍ଟର କାଳିଦାସ ଭଟ୍ଟାଚାର୍ଯ୍ୟ ବିଶ୍ୱଭାରତୀକୁ ମୋର ସାଂସ୍କୃତିକ ଅବଦାନ, ଓଡ଼ିଆ ବିଭାଗ ସଂଗଠନ ଓ ଗବେଷଣାର ଅଗ୍ରଗତି ଦିଗରେ ପ୍ରୟାସ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିଥିଲେ । ଶିଶୁଭବନ ଓ ପାଠଭବନ ତରଫରୁ ମଧ୍ୟ ବିଦାୟ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଶିଶୁ ଓ କିଶୋର ମହଲରେ ମୁଁ ସୁପରିଚିତ ଥିଲି । ଶିଶୁ-କବିତା ରଚନାର ପ୍ରେରଣା ମୁଁ ଏଇ ମହଲରୁ ପାଉଥିଲି । କିଶୋର ସାହିତ୍ୟଚକ୍ରରେ ପ୍ରାୟ-ପ୍ରତି ସପ୍ତାହରେ ଯୋଗ ଦେଉଥିଲି ।

ଚୀନାଭବନରେ ସବୁଜ ସାହିତ୍ୟିକ ଶ୍ରୀ ଅନ୍ନଦାଶଙ୍କର ରାୟଙ୍କ ସଭାପତିତ୍ୱରେ ଓଡ଼ିଆ ଛାତ୍ର ଛାତ୍ରୀମାନଙ୍କ ତରଫରୁ ବିଦାୟ ସଭା ଅନୁଷ୍ଠିତ ହୋଇଥିଲା । ଚୀନା ଭବନ ହଲର ଫ୍ରେସ୍‌କୋ ସହିତ ମୋର ଓ ଅନ୍ନଦାବାବୁଙ୍କ ଫଟୋ ନିଆଯାଇଥିଲା (କଟକ ବସାରେ ଚୋର ପଶି ସେ ଫଟୋଟି ନଷ୍ଟ କରିଦେଲା) । ଛାତ୍ରମାନଙ୍କ ତରଫରୁ ବିଦାୟ ଅଭିନନ୍ଦନ-ପତ୍ର ପାଠ କରାଯାଇଥିଲା । ତାର ଜବାବରେ ମୁଁ କହିଥିଲି-ମୁଁ କାହାଠାରୁ ବିଦାୟ ନେଇ ପାରେନାହିଁ, ପାରିବି ନାହିଁ । ସ୍ନେହଶ୍ରଦ୍ଧାର ହିସାବନିକାଶ ହୋଇପାରେନାହିଁ, ଆଜି ହୋଇପାରିବ ନାହିଁ । ଏଠାର ଦୃଶ୍ୟ ଓ ଜୀବନ ସହିତ ମୋ ପ୍ରାଣ ମିଶି ରହିଲା, ସେଥିରୁ ବିଚ୍ଛିନ୍ନ ହୋଇପାରିବି ନାହିଁ । ଯୋଉଠି ଥିଲେବି ପ୍ରାଣ ଏଠି ଘୂରିବୁଲୁଥିବ । କାହାକୁ ବା କିଛିକୁ ଭଲପାଇବାରେ ସେଇ ଅସୁବିଧା - ବିଚ୍ଛେଦ ଅସହ୍ୟ ହୁଏ ।

ମନୁଷ୍ୟ ଜୀବନ ନାନା ଲତାକୁଞ୍ଜ ପୁଷ୍ପର ଏକ ନୀଡ଼ ପରି । କିଶୋର ସ୍ମୃତି, ଯୌବନର ମାଦକତା ସବୁ ସେଇ ନୀଡ଼ରେ ଅନୁଭବ କରିହୁଏ । ମନ ଯାର ଚିର ଯାଯାବର ଭିକ୍ଷୁ, ଅନ୍ତରେ ଅନ୍ତରେ ମଧୁଚାଖିବା ଯାର ପ୍ରଧାନ କାର୍ଯ୍ୟ, ସେ କେବଳ ସ୍ତ୍ରୀ, ପୁତ୍ର ଓ ପାର୍ଥିବ ଜଗତ ମଧ୍ୟରେ ଆତ୍ମଗୋପନ କରିପାରିବ ନାହିଁ । ବିଶ୍ୱଭାରତୀର ଏଇ ନୀଡ଼ଟି ଭିତରେ ମୁଁ ବିଶ୍ୱଜଗତର ସ୍ପର୍ଶପାଇଥିଲି, ତାର ଅଭାବ ହିଁ ବଡ଼ ବାଧିବ । କିନ୍ତୁ ବ୍ୟକ୍ତିତ୍ୱ ଜଞ୍ଜାଳ ଭିତରେ ଜୀର୍ଣ୍ଣ ହେବାର ନୁହେଁ; ଜଞ୍ଜାଳକୁ ଜୀର୍ଣ୍ଣ କରିବାର ଶକ୍ତି ତାର ଅଛି ।

ମାନନୀୟ, ଡକ୍ଟର କୁଞ୍ଜବିହାରୀ ଦାଶ, ଏମ୍.ଏ., ପିଏଚ୍.ଡ଼ି.

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ,

ସଭାପତି, ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦ,

ପୂଜନୀୟ ମହାଭାଗ,

ଆପଣଙ୍କ ଜୀବନ-ମନ୍ଦାକିନୀ ବହୁଧାରାରେ ପ୍ରବାହିତ । ଆପଣ କବି, କର୍ମୀ, ଜୀବନର କୁରୁକ୍ଷେତ୍ରରେ ଗାଣ୍ଡୀବଧାରୀ ଅର୍ଜ୍ଜୁନ । ଛାତ୍ର-ଜୀବନରେ କଲିକତା ମହାନଗରୀର ଶ୍ରମିକ ନୈଶ ବିଦ୍ୟାଳୟରେ ଶିକ୍ଷକ ଭାବରେ, କର୍ମୀଜୀବନରେ ଓଡ଼ିଶା ସଂସ୍କୃତ ବିଭାଗର ଅଧ୍ୟକ୍ଷ ଭାବରେ, ବାଲେଶ୍ୱର ଫକୀରମୋହନ ସାହିତ୍ୟ ପରିଷଦର ପ୍ରତିଷ୍ଠାତା ଓ ସଭାପତି ରୂପେ ସାଂସ୍କୃତିକ ସଂଗଠନ

ଗଢ଼ିବାରେ ଅପୂର୍ବ ଶକ୍ତିର ପରିଚୟ ଦେଇଛନ୍ତି । ଜାତୀୟତାର ଆପଣ ଉପାସକ । 'ଆପଣା ଧର୍ମେ ଦୃଢ଼ ଥିବ, କେବେ ସ୍ୱଧର୍ମ ନ ଛାଡ଼ିବ'-ଭାଗବତର ଏହି ବାଣୀ ଆପଣଙ୍କ ଜୀବନରେ ପ୍ରତିଫଳିତ ।

ବିଶ୍ୱଭାରତୀ ଗବେଷଣା ବିଭାଗରେ ଓଡ଼ିଆ ଲୋକ ସାହିତ୍ୟର ଅଧ୍ୟୟନ ଓ ଗବେଷଣା ଆପଣଙ୍କ ଜୀବନର ଶ୍ରେଷ୍ଠ କୃତି । ଆପଣ ସାଧନାନିଷ୍ଠ ଗବେଷକ, ଆଦର୍ଶ ଗୁରୁ ଓ ଉଦାର ମାନବପ୍ରେମୀ କବି । ଆପଣଙ୍କ ଶିଷ୍ୟମଣ୍ଡଳୀ ପ୍ରାଚୀନ ଭାରତ ଗୁରୁକୁଳ ଭଳି ଏକକୁଟୁମ୍ବିତା ସୂତ୍ରରେ ଗ୍ରଥିତ । ଆପଣଙ୍କ କାବ୍ୟଧର୍ମୀ ଗବେଷଣା ଆପଣଙ୍କୁ ନିଖିଳ ଭାରତୀୟ ପ୍ରତିଷ୍ଠା ଆଣି ଦେଇଅଛି । ନିଖିଳ ଭାରତୀୟ ଲୋକସଂସ୍କୃତି ସମ୍ମେଳନରେ ଆପଣଙ୍କ ସମ୍ମାନ ଉତ୍କଳର ଗୌରବ ବୃଦ୍ଧି କରିଅଛି । ଉତ୍କଳ ସାହିତ୍ୟର ସୀମିତ ଧାରାକୁ ବିଶ୍ୱ ସଂସ୍କୃତିର ବିପୁଳ ପ୍ରବାହ ସହିତ ଯୁକ୍ତ କରି ଆପଣ ନବ ବିକାଶ ପଥ ନିର୍ମାଣ କରି ଅଛନ୍ତି ।

ଆପଣଙ୍କ ଅନୁପମ କାବ୍ୟଲୋକ କେବଳ ଉତ୍କଳ ଭିତରେ ନୁହେଁ ଇଂରେଜୀ ଓ ହିନ୍ଦୀ ଭାଷାରେ ଅନୂଦିତ ହୋଇ ସର୍ବତ୍ର ସଞ୍ଚାରିତ ହୋଇଅଛି ।

ବିଶ୍ୱଭାରତୀ ଓଡ଼ିଆ ପରିଷଦର ସଭାପତି ଭାବରେ ଆପଣଏହି ଅନୁଷ୍ଠାନକୁ ଗୌରବାନ୍ୱିତ କରିଅଛନ୍ତି ।

ଗୁରୁଦେବ ରବୀନ୍ଦ୍ରନାଥଙ୍କ ଅମର ଆତ୍ମାର ବାଣୀ ବହନ କରି ଆପଣଙ୍କ ସାଧନାର ଆଲୋକ ମଧ୍ୟାହ୍ନ ରବିରଶ୍ମି ପରି ଉତ୍କଳର ଆକାଶକୁ ଆଲୋକିତ କରୁ ।

ଆପଣଙ୍କ ସ୍ନେହାନୁଗତ

**ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦର ସଦସ୍ୟବୃନ୍ଦ**

ଶାନ୍ତିନିକେତନର ବୟସ୍କତମ ବୃକ୍ଷ ସେ ଥିଲା-ଥିଲା ଦିନେ ସେଠି ଏକାନ୍ତ ଭାବେ ଏକାକୀ; ରୌଦ୍ରକ୍ଳାନ୍ତ ମହର୍ଷି ଦେବେନ୍ଦ୍ରନାଥ ଦିନେ ଏହାରି ଛାୟାରେ ପରମ ଶାନ୍ତି ଲାଭ କରିଥିଲେ ; ତାପରେ ଏ ସ୍ଥାନର ଭୂଗୋଳ ବଦଳିଗଲା-ବଦଳିଗଲା ଇତିହାସ । ବଦଳାଇଦେଲେ ଋଷିପିତା, କବିପୁତ୍ର । ଏ ହେଲା ସାଧନା ଓ ସୌନ୍ଦର୍ଯ୍ୟର, କବିତା ଓ ନାଟକର, ଶିକ୍ଷା ଓ ସୌଭ୍ରାତୃତ୍ୱର ଲୀଳାଭୂମି, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ପ୍ରୟାଗ ।

ଏଇଗଛମୂଳେ ଶାନ୍ତିନିକେତନର କେତେ ଗୋଧୂଳି ମୋର କଟିଛି । ଏହା ମୂଳରେ ବସି ଭାବନାରେ ନିମଗ୍ନହେବାକୁ ଭଲଲାଗେ । କିନ୍ତୁ ଏହାର ନିର୍ଜନତା ନଷ୍ଟ କରି ଦେଉଥିଲେ ଲୀଳାଚଞ୍ଚଳା ଦୁଲାଳୀମାନେ, ସଂଲଗ୍ନ ଏକ ମାଳତୀଲତାରେ ଦୋଳି ଖେଳି । ମହାମହିମ ବନସ୍ପତିର ମର୍ଯ୍ୟାଦା ଓ ପବିତ୍ରତା ନଷ୍ଟ ହେଉଥିବାର ଦେଖି କର୍ତ୍ତୃପକ୍ଷ ଲତାଟିକୁ କାଟି ଦେଇଥିଲେ, ସତେଅବା ସେହିଦିନୁ ବିଚ୍ଛେଦ ଦଶାରେ ସପ୍ତପର୍ଣ୍ଣୀର ଶରୀର କ୍ଷୀଣ ହୋଇଗଲା । ମୋ ବିଦାୟ ବେଳେ ସେଇ ମୁମୂର୍ଷୁ

ତରୁର ଶେଷପତ୍ରରେ ମୁଁ ଶେଷଦିନର ଗୋଧୂଳିଶ୍ରୀ ଦେଖି କବିତାଟିଏ ଲେଖିଥିଲି-

ଦଗ୍ଧ ଲାଲ୍ ମାଟିର ଆଦିମ
ମହର୍ଷିର ବୋଧ୍
ସ୍ମୃତି ବିସ୍ମୃତି ର ଚୈତ୍ୟ
ପ୍ରାଚ୍ୟ ପାଶ୍ଚାତ୍ୟର ଏଇ
ଶାନ୍ତିର କୁଟୀର
ସପ୍ତପର୍ଣ୍ଣୀ
ଶେଷପତ୍ର ଶିଶିର ବିନ୍ଦୁରେ
ସନ୍ଧ୍ୟାର ଅବିର
x x x
ବିଦାୟ ହେ ତପୋବନ
ଆଜି ମୋ ନିର୍ବାଣ ।

ମୋ ବିଦାୟ ଓ ସପ୍ତପର୍ଣ୍ଣୀର ମୃତ୍ୟୁ ଏକକାଳୀନ । କିନ୍ତୁ ମୋ ଦୁଃଖରେ ମ୍ରିୟମାଣ ଓ ମୃତ ହେଲା କହିଲେ ସତ୍ୟର ଅପଳାପହିଁ ହେବ । ଏହା କାକତାଳୀୟ-କାଳର ଡକରା କେତେବେଳେ କାହାକୁ, ଏକାବେଳକେ ଅନେକଙ୍କୁ ଆସିବା ବିଚିତ୍ର ନୁହେଁ ।



(ଆତ୍ମଜୀବନୀ 'ମୋ କାହାଣୀରୁ' ଗୃହୀତ)

# ବିଶ୍ୱଭାରତୀ ଓଡ଼ିଆ ବିଭାଗ : ସ୍ମୃତି ଓ ପ୍ରତୀତି

## ନରେନ୍ଦ୍ର ନାଥ ମିଶ୍ର

ପ୍ରାଥମିକ ବିଦ୍ୟାଳୟର ସାହିତ୍ୟ ବହିରେ ମଧୁସୂଦନ (ଭକ୍ତକବି) ଙ୍କ ମହର୍ଷି ଦେବେନ୍ଦ୍ରନାଥ ଲେଖାରୁ ଶାନ୍ତିନିକେତନ ଓ ରବୀନ୍ଦ୍ରନାଥଙ୍କ ନାଁ ଜାଣିଥିଲି । ସେକାଳେ ବିଦ୍ୟାଳୟରେ ରବୀନ୍ଦ୍ରନାଥଂକ ଗୋଟିଏ ଗୀତ ଆମକୁ ଶିଖାହେଉଥିଲା । ଗୀତଟି ହେଲା ରାଜଭକ୍ତିର ପ୍ରତୀକ । ଶେଷପଦ:-

ରାତ୍ରି ପ୍ରଭାତିଲା ଉଦିଲା ରବିଛବି ପୂର୍ବ ଉଦୟ-ଗିରି-ଭାଲେ
ଗାହେ ବିହଙ୍ଗମ ପୁଣ୍ୟ ସମୀରଣ ନବ ଜୀବନ ରସ ଢ଼ାଲେ ।
ତବ କରୁଣାରୁଣ ରାଗେ, ନିଦ୍ରିତ ଭାରତ ଜାଗେ
ତବ ଚରଣେ ନତ ମାଥା
ଜୟ ଜୟ ଜୟହେ ଭାରତ ଭାଗ୍ୟ ବିଧାତା
ଜୟ ହେ, ଜୟ ହେ, ଜୟ ହେ, ଜୟ, ଜୟ, ଜୟ, ଜୟ ହେ ।।

ଏଇ ଗୀତର ପ୍ରଥମାଂଶ 'ଜନଗଣମନ ଅଧିନାୟକ' ପରେ ଜାତୀୟ ସଂଗୀତ ହୋଇ ଥିଲା । ଚରଖା ଓ ତାକୁଡ଼ିରେ ସୂତା କାଟିବା ସଂଗେ ଗାନ୍ଧୀଜୀଂକ ଅଭୟ ମନ୍ତ୍ର 'ଶରୀର ଶ୍ରମ ଆସ୍ୱାଦ ସର୍ବତ୍ର ଭୟ ବିର୍ଜନ' ଆମକୁ ଦୁଃସାହସୀ କରିଥିଲା । ଓଡ଼ିଶାର ନୂଆ ରାଜଧାନୀ ଭୁବନେଶ୍ୱରରେ ଶୁଭ ଦେବାକୁ ପ୍ରଧାନମନ୍ତ୍ରୀ ନେହରୁ ୧୯୪୮ ମାର୍ଚ୍ଚରେ କଟକ ଆସିଥାନ୍ତି । ଆଇ.ଏ.ପରୀକ୍ଷା ଶେଷ ହୋଇଥାଏ । ମୁଁ କଟକରେ ପ୍ରଧାନମନ୍ତ୍ରୀ ମହତାବ ଓ ପ୍ରଧାନମନ୍ତ୍ରୀ ନେହରୁଙ୍କ ଉଦ୍‌ବୋଧନ ବାରବାଟୀ ଦୁର୍ଗପ୍ରାଚୀରରୁ ଶୁଣିଲି । ସେଇ ବିରାଟ ଜନସଭା ଶେଷରେ ଭୁବନେଶ୍ୱର ଯାଇ ଓଡ଼ିଶାର ମନ୍ଦିର ଓ ଐତିହାସିକ ଭାସ୍କର୍ଯ ଦେଖିବାକୁ ଠିକ୍ କଲି । ଗୋଟିଏ ସାନ ଟିଣ ଘରେ ଭୁବନେଶ୍ୱର ଷ୍ଟେସନ, ପାଖରେ ଥିଲା କେତୋଟି ବଳଦଗାଡ଼ି । ତୀର୍ଥଯାତ୍ରୀ ଗୋଟିଏ ବଙ୍ଗୀୟ ପରିବାର ସଂଗେ ବଳଦଗାଡ଼ିରେ ଲିଙ୍ଗରାଜ ମନ୍ଦିର ଗଲି । ସେଠି ଗୋଟିଏ ଧର୍ମଶାଳାର ମାନେଜର ମାରୁଆଡ଼ି । ମୁଁ ହିନ୍ଦୀ ଶିଖିଥିବାରୁ ଖୁବ ଖୁସି ହେଲେ ଓ ନିଜ ପାଖରେ ରଖାଇଲେ । ଭୁବନେଶ୍ୱରର ମନ୍ଦିର ଇତିହାସ କିଛି ଜାଣିଥିଲି । ଯାତ୍ରୀଂକର ଏକପ୍ରକାର ଗାଇଡ଼ ହୋଇଗଲି । ଏପ୍ରିଲ ମାସରେ ଗୋଟିଏ ବଙ୍ଗୀୟ ପରିବାର ସଙ୍ଗରେ କଲିକତା ଆସିଲି ଅଖିଳ ଭାରତୀୟ ଉଦ୍ୟୋଗ ଶିଳ୍ପ ପ୍ରଦର୍ଶନୀ ଦେଖି । ଏଇ ଭଦ୍ରବ୍ୟକ୍ତିଂକ ନାମ ହାରାଧନ ଦାସ । ୧୩୬ ବି, ବଳରାମ ଦେ ଷ୍ଟ୍ରିଟ-କଲିକତାରେ ତାଙ୍କ ବସାରେ ମୋତେ ଗୋଟିଏ ସପ୍ତାହ ରଖି ଶିଳ୍ପ ପ୍ରଦର୍ଶନୀ ସଙ୍ଗେ ବହୁ ଦର୍ଶନୀୟ ସ୍ଥାନ ଦେଖାଇଥିଲେ । ସେମାନେ ନଦୀୟାର ଅଧିବାସୀ, ଉତ୍କଳୀୟ ବ୍ରାହ୍ମଣଂକୁ ବହୁତ ଶ୍ରଦ୍ଧା କରୁଥିଲେ । ତାଂକ ଘରେ ମୁଁ ବଙ୍ଗଳା ପଢ଼ି ଶିଖିଥିଲି, ତାଙ୍କ ସାନପିଲାଂକ ପାଖରୁ । ଦିନେ ଶାନ୍ତିନିକେତନ ଆସିବା କଥା ଥିଲା । ଶେଷରେ ହାରାଧନ ଦା' କହିଲେ ମୁଁ ଆଇ.ଏ. ପାସ କଲାପରେ ତାଂକୁ ଜଣାଇଲେ, ସେ ଶାନ୍ତିନିକେତନରେ ପଢ଼ିବା ବ୍ୟବସ୍ଥା କଥା ବୁଝିବେ । ମୁଁ କିନ୍ତୁ

ବାଲେଶ୍ୱର କଲେଜରେ ବି.ଏ. ପଢ଼ୁଥିଲି ଓ ଏହାର ଠିକ୍ ଛ ମାସ ପରେ କଲେଜରୁ ଶିକ୍ଷାମୂଳକ ଭ୍ରମଣରେ କଲିକତା ଓ ଶାନ୍ତିନିକେତନ ଆସିଥିଲି । ସେତେବେଳେ ଜାଣିଲି ଶାନ୍ତିନିକେତନର ଓଡ଼ିଆ ଚର୍ଚ୍ଚା କଥା ।ଏହାର ନିର୍ଦ୍ଦେଶକ ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ଆଶ୍ରମ ବୁଲାଇ ଦେଖାଇଲେ । ସକାଳେ ଆମ ଗାଡ଼ି ବୋଲପୁରରେ ପହଞ୍ଚିଲା ଓ ସଂଧ୍ୟାରେ ଛାଡ଼ିଲା । ଆମ ଜିନିଷ ପାଇଁ କେବଳ ବଳଦଗାଡ଼ି ବ୍ୟବସ୍ଥା ହୋଇଥିଲା । ଆମେ ଚାଲିଥିଲୁଁ । ମୁକ୍ତଦ୍ୱାର ପାନ୍ଥଶାଳାରେ ଆଶ୍ରୟ ନେଲୁ । ସେଠି ବତୁରା ବୁଟ ଗୁଡ଼ ଓ ପିଇବାପାଣି ରଖି ଜଣେ ତତ୍ତ୍ୱାବଧାରକ ଥାନ୍ତି । କୂଅରୁ ପାଣି କାଢ଼ି ଆମେ ସ୍ନାନ ଆଦି ସାରିଲୁ ଓ ବୁଟଗୁଡ଼ ଖାଇ ଆଶ୍ରମ ବୁଲି ବାହାରିଲୁଁ । ଅଧ୍ୟାପକ ପ୍ରଧାନଙ୍କ ବ୍ୟବସ୍ଥା କ୍ରମେ ଆମପାଇଁ ଆଶ୍ରମ ରନ୍ଧନଶାଳାରେ ସ୍ୱତନ୍ତ୍ର ଭାବରେ ମଧ୍ୟାହ୍ନ ଭୋଜନ ରନ୍ଧାଯାଇଥିଲା । ସେତେବେଳେ ଶାନ୍ତିନିକେତନର ସେପରି କିଛି ବିଭବ ନ ଥିଲା । ମାତ୍ର ବହୁସଂଖ୍ୟକ କ୍ଷୁଦ୍ର ଚାଳଛିଆଣି କୁଟୀରରେ ଚିରନ୍ତନ ଭାରତ ଆତ୍ମାର ବିଭୂତି ଅମ୍ଳାନ ଥିଲା । ଆଶ୍ରମର ପୂର୍ବାଦକ୍ଷିଣ କୋଣରେ ଥିବା ଗୋଟିଏ ସାନ ଚାଳଘରେ ଥାଇ ରବୀନ୍ଦ୍ରନାଥ 'ଗୀତାଞ୍ଜଳି' ଲେଖିଥିଲେ । ମନେ ହୋଇଥିଲା ହିଂସାପ୍ରମତ୍ତ ପୃଥିବୀକୁ ଶାନ୍ତିର ଏକ ନୀଡ଼ରେ ଏକାତ୍ମ କରିବା ପାଇଁ ରବୀନ୍ଦ୍ରନାଥ ଥିଲେ ଏ ଯୁଗରବୁଦ୍ଧ । ସେ ଯୁଗର କପିଳ ବାସ୍ତୁ ଓ ଲୁମ୍ବିନୀ-ଏ ଯୁଗର ଯୋଡ଼ାଶାଂକୋ ଓ ଶାନ୍ତିନିକେତନ । ସମୟର ବ୍ୟବଧାନ ଥିଲେ ବି ଆଦର୍ଶ ଥିଲା ଏକ-ମହାମାନବର ଉତ୍ତରଣ । ଶୁଣିଲୁ କଲିକତା ବୋଟାନିକାଲ ଗାର୍ଡ଼ନ ଭଳି ଆଶ୍ରମର ଏତେ ବଡ଼ ଉଦ୍ୟାନ ଦେଖାଶୁଣା କରିବାକୁ ସେପରି ବେଶି ଲୋକ ନ ଥିଲେ । ଛାତ୍ର ଛାତ୍ରୀମାନେ ସପ୍ତାହିକ ଛୁଟିଦିନ ବଗିଚାରେ କାମ କରୁଥିଲେ। ସେଥିପାଇଁ ଉଦ୍ୟାନ ସୁନ୍ଦର ପରିଚ୍ଛନ୍ନ ହୋଇ ରହୁଥିଲା । କେବେ ଜୀବନରେ ଶାନ୍ତିନିକେତନରେ ପାଦଦେବି, ତା ଭାବି ନ ଥିଲି । ଅନ୍ତେବାସୀ ହେବାର ସ୍ୱପ୍ନ ବି ଦେଖି ନ ଥିଲି । ତେବେ ଶାନ୍ତିନିକେତନରୁ ଫେରି ଗାଁ ମହାଦେବ ବେଢ଼ାରେ ଗାଁ ପିଲାଙ୍କୁ ଧରି ଫୁଲବଗିଚା କରାଇ ଥିଲି । ବି.ଏ. ଶ୍ରେଣୀରେ ପଢ଼ିବା ବେଳେ 'ବିଶ୍ୱଭାରତୀ କ୍ୱାଟାର୍ଲି' ପଢୁଥିଲି । ଆମମାନଂକର ପରମ ଶ୍ରଦ୍ଧାଭାଜନ ଅଧ୍ୟାପକ କୁଂଜବିହାରୀ ଦାଶ ବି.ଏ. ଶେଷବର୍ଷ ଆମକୁ ଛାଡ଼ି ଶାନ୍ତିନିକେତନ ଆସିଲେ । ବିଶ୍ୱଭାରତୀରେ ବିଶ୍ୱ ସାହିତ୍ୟ ପରିଷଦ, ସେଥିରେ ତାଂକର ସଂପାଦକ ହେବାର ଖବର ପଢ଼ି ଛୋଟ ଚିଠିଟିଏ ଲେଖିଥିଲି । ସେତେବେଳକୁ ଖୁବ ସମ୍ଭବ ଟେଷ୍ଟ ପରୀକ୍ଷା ଶେଷ ହୋଇ କଲେଜ କ୍ଲାସ ବନ୍ଦ ହୋଇଯାଇଥିଲା । ମୁଁ ଗାଁରେ ଥିଲି । ସାରଂକ ସେଇଟି ମୋତେ ଲେଖା ପ୍ରଥମ ଚିଠି । ସେଇ ଚିଠିଟି ଏବେ ବି ପଢ଼ି ମୁଁ ପ୍ରେରଣା ପାଏ । ସେଇଚିଠିର କେତୋଟି ପଂକ୍ତି ବୋଧହୁଏ ଯେ କୌଣସି ଆଦର୍ଶବାଦୀକୁ ଏବେ ବି ପ୍ରେରଣା ଦେବ ।

୫.୪.୫୦

ଶା.ନି.

ସ୍ନେହର ନରେନ୍ଦ୍ର,

ମୋର ଶୁଭେଚ୍ଛା ଓ ଆଶୀର୍ବାଦ ଗ୍ରହଣ କରିବ । ତୁମ ପତ୍ର ଖଣ୍ଡିକ ପଢ଼ି ଆନନ୍ଦିତ

ହେଲି । ତୁମେ ଭୁଲିନାହଁ ଜାଣି ବିଶେଷ ଖୁସି । ମୁଁ ତୁମମାନଂକୁ ଭୁଲିନାହିଁ କି ଭୁଲିପାରିବି ନାହିଁ । ଭୁଲିବି ସେତିକିବେଳେ,ଯେତେବେଳେ ତୁମେ ଦେଶର ଜଣେ ବଡ଼ଲୋକ ହେବାକୁ ଚେଷ୍ଟା ନ କରି ଜନସମୁଦ୍ର ମଧ୍ୟରେ ବୁଡ଼ି ହଜିଯିବ । ଯେକୌଣସି ଅବସ୍ଥାରେ ବି ମଣିଷ ଚେଷ୍ଟା କରି ନିଜକୁ ଉନ୍ନତ ରଖିପାରେ, ନିଜର ବୈଶିଷ୍ଟ୍ୟ ହେତୁରୁ ଦେଶର ଦୃଷ୍ଟି ଆକର୍ଷଣ କରିପାରେ । ତୁମର ଉଦ୍ୟମ ଅଛି, ଉଚ୍ଚାକାଂକ୍ଷା ଅଛି । ନିଶ୍ଚୟ ବିଶିଷ୍ଟତା ରକ୍ଷାକରିବ ।

......... ତୁମେ କେତେ ଦିନ ପରେ ସଂସାରରେ ପଶିବ, ଚାକିରି କରିବ । ଯାହା କର ଅସଲ ଲକ୍ଷ୍ୟ- ଧ୍ରୁବତାରାଟିକୁ ଭୁଲିଯିବ ନାହିଁ । ଦେହ ବିନାଶିବା ଆତ୍ମହତ୍ୟା ନୁହେଁ, ଏହାକୁ ହିଁ ଯଥାର୍ଥ ଆତ୍ମହତ୍ୟା କହନ୍ତି । ଆମ ବି : ସା (ବିଶ୍ୱସାହିତ୍ୟ) ପରିଷଦ ଭଲଭାବରେ ଚାଲିଛି । ତୁମେ ଗାଁରେ ରହି କିଛି ଉପକାର କର । ଗାଆଁରେ ଅସଲ ସଂସ୍କୃତି ଅଛି । ତାକୁ ଭଲକରି ବୁଝ । ମୁଁ ସେଇ ସଂସ୍କୃତି ବିଷୟରେ ଆଲୋଚନା କରୁଅଛି । ତୁମେ ଗାଆଁରୁ କେତେକ ଗାଉଁଲି ଗୀତ ଓ ଅପ୍ରକାଶିତ କାହାଣୀ ସଂଗ୍ରହ କରି ମୋ ଲାଗି ପଠାଅ । ମୋର ଆଉ ସବୁ ଭଲ । ଇତି

ଶୁଭାକାଂକ୍ଷୀ Sir

To

Sj. Narendranatha Mishra, B.A. Hons.

Vil-Gilida, P.O. Gopalpur, Dt.Balasore, Orissa.

ଏଇ ସମୟରେ ମୋ ମା ଠାରୁ 'ପଦ୍ମ ଘୁଞ୍ଚିଘୁଞ୍ଚି ଯାଉଛି', ଗଳ୍ପଟି ଲେଖି ପଠାଇଥିଲି । କେତେବେଳେ କେମିତି ସୁଖ ଦୁଃଖ ଲେଖି ଚିଠି ବି ଦେଉଥିଲି । କୌଣସି ଚିଠିରେ ଯଦି ସାମାନ୍ୟତମ ନିରୁତ୍ସାହ ଓ ଅଧୈର୍ଯ୍ୟ ଭାବ ଥାଏ , ସାର୍ ଉତ୍ସାହ ଓ ଉପଦେଶପୂର୍ଣ୍ଣ ଚିଠି ଲେଖନ୍ତି । ୧୪.୭.୫୦ରେ ଶାନ୍ତିନିକେତନରୁ ଲେଖା ଗୋଟିଏ ଚିଠିରେ ଥିଲା- 'ମୋର ହୃଦୟଭରା ଆଶୀର୍ବାଦ ଗ୍ରହଣ କରିବ ......ଜୀବନରେ ପରୀକ୍ଷାକୁ ତୁମେ ଯେତେ ବଡ଼ ସ୍ଥାନ ଦେଇଛ, ତାହା ଯଥାର୍ଥରେ ତାର ପ୍ରାପ୍ୟ ନୁହେଁ । ...ତୁମ ଦ୍ୱାରା ଭବିଷ୍ୟତରେ ବଡ଼ ବଡ଼ କାର୍ଯ୍ୟ ସାଧିତ ହେବ । ଏ ସାମାନ୍ୟ ବିପଦରେ ଧୈର୍ଯ୍ୟ ହରାଇଲେ ବଡ଼ ବଡ଼ କାର୍ଯ୍ୟ ସାଧନ କରିବ କିପରି ? ତୁମର ହୃଦୟ ଉଚ୍ଚ, ମନ ନିର୍ମଳ, ଆକାଂକ୍ଷା ବିରାଟ; ସାଧନା ଓ ଅଧ୍ୟବସାୟ ଅଛି । ତୁମେ ଜଣେ ବଡ଼ ଲୋକ ହେବ । ମୁଁ ଏହା ବାଣୀର ଉଚ୍ଛ୍ୱାସରେ କହୁନାହିଁ ; ଅନ୍ତରେ ଅନ୍ତରେ ଅନୁଭବ କରୁଛି । .....ଭଗବାନ ତୁମର ଅବଶ୍ୟ ମଂଗଳ କରିବେ । ତୁମର ଚରିତ୍ର ଦୃଢ଼, ସଂକଳ୍ପ ତୀକ୍ଷ୍ଣ ହେବା ଆବଶ୍ୟକ । .....ଯେଉଁ ମସ୍ତିଷ୍କ ଅଗ୍ରଗାମୀ କମାଣ ମୁହଁରେ ଗତିକରେ ମୁଁ ତାର ସାଥୀ । ଗାଉଁଲୀ ଗୀତ ପଠାଇଦେବ । ପତ୍ରଦେବ । ଇତି ।

ଶୁଭାକାଂକ୍ଷୀ Sir

ମୁଁ ନୂଆ ହୋଇ ଖୋଲିଥିବା ରେଭେନ୍‌ସାର ଇତିହାସ ଏମ.ଏ. ଶ୍ରେଣୀରେ ପଢ଼ିଲି । ତା ସଂଗେ ବି.ଏଲ. ବି ପଢୁଥାଏ । ଶାସନ ବିଭାଗ ଚାକିରୀ ପାଇଁ ମଧ୍ୟ ଆମେ ତିନି ଚାରିଜଣ ବନ୍ଧୁ ଏକାଠି ବସି ପଢ଼ାପଢ଼ି କରୁଥିଲୁ । ଯେଉଁମାନଂକର ଆର୍ଥିକ ଅବସ୍ଥା ଭଲ ନ ଥାଏ, ସେମାନେ କୌଣସି ଅଫିସରେ କିରାଣୀ କାମ କରୁଥିଲେ, ବା ଟିଉସନ୍ କରୁଥିଲେ । ବାରିପଦା ସ୍କୁଲ ସାଂଗ ଓ କଲେଜରେ ମୋର ସହାଧ୍ୟାୟୀ ଅଖିଳଚନ୍ଦ୍ର ପଣ୍ଡା ଅର୍ଥନୀତିରେ ଅନର୍ସ ପାଇ କେବଳ ବି.ଏଲ୍. ପଢୁଥିଲେ । ସ୍କୁଲ ଓ କଲେଜରେ ବକ୍ତା, ଲେଖକ ଭାବରେ ତାଂକର ସୁନାମ ଥିଲା । ତାଙ୍କର ସାରଂକ (କୁଂଜବାବୁଂକ) ସଂଗେ ପରିଚୟ ଥିଲା । ସେ ଦିନେ ଗୋଟିଏ ଦରଖାସ୍ତ ଲେଖିଆଣି ମୋତେ କହିଲେ, ତୁମେ ଶାନ୍ତିନିକେତନରେ ଗବେଷକ ହୋଇ ଯାଅ । ତାଂକୁ ସାର୍ ଯିବାକୁ ଲେଖିଥିଲେ, ସେ କଟକ ଛାଡ଼ିବାକୁ ରାଜି ନ ଥିଲେ । କିଛି ନ ଭାବି ତାଂକ କଥାରେ ଦସ୍ତଖତଟିଏ ମାରିଦେଲି । ଓ.ଏ.ଏସ୍. ପରୀକ୍ଷା ପାଇଁ ଲାଗିଥିଲି । ବିଶ୍ୱଭାରତୀ ଅବିଳମ୍ବେ ଯିବାକୁ ହେବ- ଏମିତି ଧାରଣା ନ ଥିଲା । ମୁଁ ଗାଁରେ ଥାଇ ତଳ ଚିଠିଟି ପାଇ ବିସ୍ମିତ ଓ କିଂକର୍ତ୍ତବ୍ୟବିମୂଢ଼ ହେଲି ।

Visva-Bharati
Santiniketan, West Bengal
୧୨.୧୦.୧୯୫୦

ସ୍ନେହର ନରେନ୍ଦ୍ର,

୩ ଖଣ୍ଡ ପତ୍ର କଟକ ଠିକଣାରେ ଦେଲିଣି । କୌଣସି ଉତ୍ତର ମିଳୁନାହିଁ । ତୁମେ ଗବେଷକ ହିସାବରେ ବିଶ୍ୱଭାରତୀରେ ନିଯୁକ୍ତ ହେଲ । ନିଯୁକ୍ତି ପତ୍ର କଟକ ଠିକଣାରେ ଯାଇଛି । ତୁମ କଥା ଅନୁସାରେ ସବୁ କାର୍ଯ ହୋଇଛି ତେଣୁ, ଯେକୌଣସି ମତେ ଆସି ଶୀଘ୍ର ଯୋଗଦିଅ । ....ଯଦି ନିତାନ୍ତ ଅସୁବିଧା ଥାଏ, ପୂଜାପରେ ନଭେମ୍ବର ୧୫ ରେ ଏଠାରେ ଯୋଗଦେବ । ତୁମେ ଯୋଗ ନ ଦେଲେ ଆମ ଇଜ୍ଜତ ପଦାରେ ପଡ଼ିବ । ଏଠାରେ ରହି ଏମ.ଏ. ପରୀକ୍ଷା ଦେବାରେ କୌଣସି ଅସୁବିଧା ନାହିଁ । ଶୀଘ୍ର ଆସ । ଇତି ।

ଶୁଭାକାଂକ୍ଷୀ
କୁଂଜବିହାରୀ ଦାଶ

ନିଯୁକ୍ତିପତ୍ର ପାଇବାପରେ ମୁଁ ସାରଂକୁ କିଛି ନ ଜଣାଇ ପାରି ଗାଁକୁ ଚାଲିଯାଇଥିଲି ଘରେ କେହି କଟକ ପଢ଼ା ଛାଡ଼ିବା ବିଷୟରେ ରାଜିହେଲେ ନାହିଁ । ଉଚ୍ଚଶିକ୍ଷା ତଥା ଗୋଟିଏ ଭଲ ସରକାରୀ ଚାକିରୀ ବା ଓକିଲାତି ପାଇଁ ମୋର ମଧ୍ୟ ମୋହ ଊଣା ନ ଥିଲା । ମୋ ପ୍ରତିକ୍ରିୟା ଖୋଲାଖୋଲି ଭାବରେ ସାଂରକୁ ଜଣାଇ ଦେଇଥିଲି । ତେବେ ଉପର ଚିଠିଟି ପାଇବା ପରେ ଭବିଷ୍ୟତ ଲାଭ କ୍ଷତିର କୌଣସି ବିଚାର ନ କରି ଶାନ୍ତିନିକେତନ ଯିବାକୁ ସଂକଳ୍ପ କଲି-ଆମ ଜାତୀୟ ଇଜ୍ଜତ

ପଦାରେ ଯେପରି ନପଡ଼େ । ମୋର ପୂର୍ବ ଚିଠିଟି ପାଇ ସାର ୨୪।୧୦।୫୦ରେ ଲେଖିଥିଲେ-

ସ୍ନେହର ନରେନ୍ଦ୍ର,

ମୋର ସ୍ନେହାଶିଷ ଗ୍ରହଣ କରିବ । ତୁମ ଚିଠିରୁ ବୁଝିଲି ଯେ ତୁମେ ମହା ସଂଶୟରେ ଘାଣ୍ଟିହେଉଛ । ଜୀବନଟା କଅଣ ମଟର ଗାଡ଼ି ପରି ପିଚ୍ ରୋଡ଼ରେ ଚାଲିଥିବ ? ସଂଘର୍ଷ, ସଂଗ୍ରାମକୁ ଡରିଲେ ଚଳିବ ନା ? ଏଠି ତ ତୁମ ଉଚ୍ଚଶିକ୍ଷାରେ କୌଣସି ବାଧା ପଡ଼ି ନାହିଁ । ଘରୋଇ ଭାବରେ ଏମ.ଏ. ପରୀକ୍ଷା ଦେଇ ପାରିବ । ବ୍ୟସ୍ତ କାହିଁକି ? ଗବେଷଣା ଓ ଏମ.ଏ. ପଢ଼ା ଉଭୟ ଚାଲିଥିବ । ୨/୩ ବର୍ଷ ରହି ଏଠାରୁ ଗଲେ ଅବଶ୍ୟ ତୁମର ଗୌରବ ବଢ଼ିବ । ତୁମେ କଣ ଚାକିରି ଛଡ଼ା ଅନ୍ୟ କୌଣସି କାମକୁ ଯୋଗ୍ୟ ହେବନାହିଁ ? ଗୋଟିଏ ବହିଦୋକାନ ବା ପ୍ରେସ କରିପାରବ ନାହିଁ ? ଚାକିରୀ ନ ହେବ କାହିଁକି ବୁଝୁନାହିଁ । ଜୀବନରେ ବହୁପନ୍ଥା ଉନ୍ମୁକ୍ତ ଥିଲାବେଳେ ଏତେ ଭୟ କରୁଛ କାହିଁକି ? ତୁମେ ଆସିବା ନ ଆସିବା କଥା ସ୍ଥିର ଭାବରେ ଜଣାଅ । ତୁମର ଆସିବାରେ ଯଦି ଇଚ୍ଛା ନଥାଏ, ତେବେ 'ସମାଜ'ରେ ବିଜ୍ଞାପନ ଦିଆଯିବ । ତୁମେ ସ୍ୱଇଚ୍ଛାରେ ଏଠାକୁ ନ ଆସିଲେ କୌଣସି ଫଳ ନାହିଁ । ତୁମ ଜୀବନ ମାର୍ଗ ସ୍ଥିର କରିବାର ପୂର୍ଣ୍ଣ ସ୍ୱାଧୀନତା ତୁମର ଅଛି । ମୋତେ ଖାଲି କଥା ଦେଇଥିଲ ବୋଲି ମୁଁ ଆଦୌ ବାଧ୍ୟ କରିବି ନାହିଁ । ମୋ ମନ କଥା ତ ଜାଣ । ଭଗବାନ ତୁମର ମଙ୍ଗଳ କରନ୍ତୁ, ଏହା ହିଁ ମୋର କାମନା । ତୁମେ ଦୁନିଆଁରେ ଯେଉଁଠି ଥାଅ ଏ କାମନାରୁ ବଞ୍ଚିତ ହେବନାହିଁ । ଆସିବା ନଆସିବା ଶୀଘ୍ର ସ୍ଥିର କରି ଲେଖ । ଗାଉଁଲୀ ଗୀତ ବା ପୋଥି କିଛି ସଂଗ୍ରହ କରି ଆଣିବ,ଯଦି ଆସ । ଇତି ।

ଶୁଭାକାଂକ୍ଷୀ

ସାର

ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନଙ୍କ ପରିବାର ରତନପଲ୍ଲୀରେ ଥିଲେ । ପ୍ରଧାନଂକ ସାନଭାଇ ଦେବେନ୍ଦ୍ର ମୋତେ ଆଣିବାକୁ ବୋଲପୁର ଷ୍ଟେସନକୁ ଯାଇଥିଲେ । ୧୪.୧୧.୧୯୫୦ ଦି ପହର ବେଳେ ରତନପଲ୍ଲୀରେ ତାଂକରି ବସାରେ ଉଠିଲି । ଉପରବେଳା 'ଶାନ୍ତିନିକେତନ ଗୃହ' ଅତିଥିଶାଳାକୁ ଗଲି । ୧୫.୧୧.୧୯୫୦ ସକାଳେ ଅଧ୍ୟକ୍ଷ ଆସି ମୋତେ ଅତିଥିଶାଳାରୁ ସଂଗରେ ଘେନି ଯାଇ କେନ୍ଦ୍ର ଗ୍ରନ୍ଥାଗାର ଉପରେ ଓଡ଼ିଆ, ବିଭାଗ ବିଦ୍ୟାଭବନ ଗ୍ରନ୍ଥାଗାର ଦେଖାଇ ଦେଲେ । ତାଂକ ସଂଗରେ ଚୀନାଭବନରେ ଥିବା ଅଫିସକୁ ଗଲି । ବିଦ୍ୟା ଭବନର ଏକମାତ୍ର ଅଫିସ-କର୍ମୀ ଭାରତୀ ଦା' ଗେରୁଆ ପିନ୍ଧା ଜଣେ ସନ୍ନ୍ୟାସୀ ଭଳି, ସସ୍ନେହ ବ୍ୟବହାର । ମୋଠାରୁ କାର୍ଯରେ ଯୋଗଦେବାର ଚିଠି ଲେଖାଇ ନେଲେ । 'ତିନିସଙ୍ଗୀ' ରେ ଚିତ୍ତବାବୁ ପୂର୍ବରୁ ଯେଉଁଘରେ ରହୁଥିଲେ, ସେଇଠି ରହିଲି । ଜୀବନରେ ଏକ ନୂଆ ଅଧ୍ୟାୟ ଆରମ୍ଭ ହେଲା

କାଠରେ ପାର୍ଟିସନ ଦିଆ ସାନ ଘରଟିରେ ଓଡ଼ିଆ ବିଭାଗ-ନିର୍ଦ୍ଦେଶକ ଓ ଗବେଷଣା ସହାୟକଙ୍କ ପାଇଁ ସେଇଘରେ ଦୁଇଟି ଟେବୁଲ ଓ ଗୋଟିଏ ପାଖରେ ଦୁଇଟି ଖୋଲା ବଡ଼ ବଡ଼ କାଠଭାଡ଼ିରେ ଓଡ଼ିଆ ବହି, ପୋଥି ଓ ପତ୍ରପତ୍ରିକା ସଜା ହୋଇ ରହିଥିଲା । ତଳମହଲାର କେନ୍ଦ୍ରୀୟ

ଗ୍ରନ୍ଥାଗାରରେ ଗୋଟିଏ ଥାକର ଏକାଂଶରେ କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଆ ସାହିତ୍ୟର ଟିପିକାଲ ସିଲେକ୍‌ସନ, ଓଡ଼ିଆ ଭାଷାକୋଷ ଓ କିଛି ପୁରାଣ ଗ୍ରନ୍ଥ ଅତି ସୁନ୍ଦର ରୂପେ ଚମଡ଼ାରେ ବନ୍ଧାହୋଇ ରହିଥିଲା ।

ଓଡ଼ିଆ ବିଭାଗରେ ବହି ଓ ପତ୍ରପତ୍ରିକା ଯତ୍ନ ନେବା ଓ ସାମୟିକ ଖର୍ଚ୍ଚର ହିସାବ ରଖିବା ଥିଲା ମୋର ପ୍ରଧାନ କାମ । ଏଇ ସମୟରେ ଚିତ୍ତବାବୁଙ୍କ ଓଡ଼ିଆ ବହିସବୁ ଛପାହେଉଥିଲା । ସାର୍ ମୋତେ ବହିର ପ୍ରୁଫ୍ ଦେଖା ଶିଖାଇଲେ । ମୋର ସେତେବେଳେ ଲକ୍ଷ୍ୟଥିଲା କଲିକତା ବିଶ୍ୱବିଦ୍ୟାଳୟରୁ ଘରୋଇଛାତ୍ର ଭାବରେ ଇତିହାସରେ ଏମ.ଏ. କରିବି । ଏ ଦିଗରେ ଅଧ୍ୟକ୍ଷ ଡ଼ଃ ବାଗ୍‌ଚୀ ମୋତେ ଖୁବ ଉତ୍ସାହିତ କରୁଥିଲେ । ବିଦ୍ୟାଭବନରେ ତାଂକର ବ୍ୟକ୍ତିଗତ ଗ୍ରନ୍ଥାଗାରରେ ଥିବା ବହି ମଧ୍ୟରେ ଅନେକ ଇତିହାସ ବହି ଥିଲା । ସେସବୁ ମୋତେ ସେ ବ୍ୟବହାର କରିବାକୁ ଛାଡ଼ି ଦେଇଥିଲେ । କଲିକତା ଶ୍ରୀ ଗୋପାଳ ମଲ୍ଲିକ ଲେନ୍‌ରେ କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଛାତ୍ରବାସ ଥିଲା । ସାରଂକ ଗୁରୁଦେବ ଅଧ୍ୟାପକ ମହେଶ୍ୱର ଦାଶ ଥିଲେ ତତ୍ତ୍ୱାବଧାରକ । ସେଠି ବାଲେଶ୍ୱର କଲେଜର ମୋର ସହପାଠୀ ଜଣେ ଇତିହାସରେ ଏମ.ଏ. ପଢୁଥିଲେ । ତାଂକଠାରେ ରହି ମୁଁ ମଝିରେ ମଝିର ସେଠାର କ୍ଲାସ ନୋଟ୍ ଓ ବହିପତ୍ର ଦେଖୁଥିଲି । ମୁଁ ଶାନ୍ତିନିକେତନ ଆସିବା ପରେ ବହୁ ବନ୍ଧୁ ଓ ଶୁଭେଚ୍ଛୁ ବଧେଇ ଜଣାଇ ଚିଠି ଲେଖିଥିଲେ । ଓଡ଼ିଶା କୋପରେଟିଭ ବିଭାଗରେ ଡେପୁଟୀ ରେଜିଷ୍ଟ୍ରାର ସ୍ୱନାମଧନ୍ୟ ସାହିତ୍ୟିକ ଓ ମୋର ମାମୁଁ ପୁଅ ଭାଇ ଅନନ୍ତ ପ୍ରସାଦ ପଣ୍ଡାଂକ ଚିଠିରୁ ମୋ ଜୀବନର ଗତିପଥର ନିର୍ଦ୍ଦେଶ ପାଇଥିଲି । ତାଙ୍କ ଦୀର୍ଘ ପତ୍ରର କିଛି ଅଂଶ :-

A.P. Panda, B.A.
Deputy Registrar of Co-operative Societies,
Bhubaneswar, Orissa

Date 29.11.1950

ଶ୍ରୀମାନ୍ ନରେନ୍ଦ୍ର,

ତୋର ୨୪ ତାରିଖ ପତ୍ରଟି ଅପ୍ରତ୍ୟାଶିତ ଭାବରେ ଆଜି ଏଠାରେ ପାଇଲି । ତୁ ଏମ.ଏ. ପାଶକରି ଶାନ୍ତିନିକେତନରେ ରିସାର୍ଚ୍ଚ କରୁଥିବାର ଶୁଣି ଏତେ ଦୂର ପ୍ରୀତ ହେଲି ଯେ ତାହା ପ୍ରକାଶ କରିବା ଅସମ୍ଭବ । ......ମୋର ଅତି ଆପଣାର ଲୋକ କୁଂଜବାବୁଙ୍କ ସାହାଯ୍ୟ ଓ ସାହଚର୍ଯ୍ୟ ପାଇ ତୁ ଉପକୃତ ହେବୁ ନିଶ୍ଚୟ । ସେ ଯେପରି ଉଦାରଚେତା, ସୁସାହିତ୍ୟିକ, ତାଙ୍କର ସ୍ତ୍ରୀ ଶ୍ରୀମତୀ ପ୍ରେମଲତା ମଧ୍ୟ ସେହିପରି ଜଣେ ସୁସାହିତ୍ୟିକା, ଲେଖିକା ମଧ୍ୟ ।

× × × ×

ଶାନ୍ତିନିକେତନରେ ରହିବା ଅବସ୍ଥାରେ ସାହିତ୍ୟ ସାଧନା ପାଇଁ ତୁ ନିଶ୍ଚୟ ଯଥେଷ୍ଟ ସୁବିଧା

ପାଇପାରିବୁ । ବାସ୍ତବିକ ସାହିତ୍ୟ ହିଁ ନୀରସ ପ୍ରାଣକୁ ସରସ କରିଥାଏ । ଚେଷ୍ଟା କଲେ ଓ ମନଦେଲେ ତୁ ନିଶ୍ଚୟ ଖୁବ ସାହିତ୍ୟ ସାଧନା କରିପାରିବୁ ।

× × × ×

ତୁ ଇତିହାସରେ ଏମ.ଏ. ପଢ଼ିବାର ଯୋଗାଡ଼ କରୁଥିବାର ଶୁଣି ସୁଖୀ ହେଲି । କାରଣ ତୁ ଏମ.ଏ. ଟା ପାଶ କରିପାରିଲେ ଶାନ୍ତିନିକେତନର ରିସାର୍ଚ୍ଚ ସ୍କଲାର ଭାବରେ ଗୋଟାଏ ପ୍ରଫେସର ହୋଇପାରିବୁ । ତେବେ ଯାଇ ଆଜୀବନ ସାହିତ୍ୟ ଓ ସଂସ୍କୃତିର ସାଧନା ପାଇଁ ଅବସର ଓ ସୁଯୋଗ ପାଇ ପାରିବୁ । .....ତୋର definite chief aim ହେବା ଉଚିତ ଗୋଟିଏ ପ୍ରଫେସର ହେବା .........Go on. May God bless you and keep you in the path of achieving happiness and success. ଆଜି ଏତିକି । ଇତି ।

ତୋର ଶୁଭାକାଂକ୍ଷୀ
ନନା

ସେ ସମୟରେ ବିଶ୍ୱଭାରତୀ କୌଣସି ସରକାରୀ ଅନୁଷ୍ଠାନ ନ ଥିଲା । ଏହା ଥିଲା ଏକ ସ୍ୱାଧୀନ ଆନ୍ତର୍ଜାତୀୟ ବିଶ୍ୱବିଦ୍ୟାଳୟ-ମୁଖ୍ୟତଃ କଳା, ସଂଗୀତ, ପଲ୍ଲୀଉନ୍ନୟନ, କୃଷି ଓ ଉଦ୍ୟାନ ବିଦ୍ୟା, ହସ୍ତଶିଳ୍ପ ଆଦି ମଧ୍ୟରେ ଏହାର କାର୍ଯ୍ୟ ସୀମାବଦ୍ଧ ଥିଲା । ରବୀନ୍ଦ୍ରନାଥ ତଥା ତାଂକର ସହକର୍ମୀ ଶିକ୍ଷକମାନେ ଲେଖିଥିବା ବହିରୁ ଆୟ, କୁଟୀର ଶିଳ୍ପଜାତ ଦ୍ରବ୍ୟରୁ ହେଉଥିବା ଆୟରେ ବିଶ୍ୱଭାରତୀ ଚଳାଇବା କଷ୍ଟସାଧ୍ୟ ଥିଲା । ରବୀନ୍ଦ୍ରନାଥଙ୍କ ସମୟରେ ଅନେକ ଦାନ ଆସୁଥିଲା । ଏଇ ପରିସ୍ଥିତି ଚାପରେ ବହୁ ଟଙ୍କା ଋଣ କରିବାକୁ କର୍ତ୍ତୃପକ୍ଷ ବାଧ୍ୟହୋଇଥିଲେ । ତେଣୁ ବିଶ୍ୱଭାରତୀର ପରିଚାଳନା କେନ୍ଦ୍ର ସରକାରଙ୍କୁ ଦେବା କଥା ଚାଲିଥିଲା । ଶିକ୍ଷାମନ୍ତ୍ରୀ ମୌଲାନା ଆବୁଲ କାଲାମ ଆଜାଦ୍, ତାଙ୍କ ସଚୀବ ହୁମାୟୁନ କବୀର ଦିନେ ବିଦ୍ୟାଭବନ ବିଭାଗ ସବୁ ଦେଖି ଆସିଥିଲେ । ଓଡ଼ିଆ ତାଳପତ୍ର ପୋଥି ଦେଖି ଖୁବ କୌତୁହଳ ପ୍ରକାଶ କରିଥିଲେ । ଆଉ ଥରେ ନେହରୁ ଓ ଶେଖ ଅବଦୁଲ୍ଲା ଆସିଥିଲେ । ବିଦ୍ୟାଭବନ ସମ୍ମୁଖ ବାରଣ୍ଡାରେ ଠିଆହୋଇ ଆମେ ସବୁ କରମର୍ଦ୍ଦନ କରିଥିଲୁଁ ।

ଶାନ୍ତିନିକେତନରୁ ସାରଂକ ସଂଗରେ ପ୍ରବାସୀ ଉତ୍କଳ ଛାତ୍ର ସମ୍ମିଳନୀରେ ଯୋଗ ଦେବାକୁ ଯାଇ କଲିକତାରେ ନୀଳକଣ୍ଠ, ମାୟାଧର ମାନସିଂହ, ଅନ୍ନଦାଶଂକର ରାୟ ଓ କଲିକତା ବିଶ୍ୱବିଦ୍ୟାଳୟର ବହୁ ଅଧ୍ୟାପକଂକ ବକ୍ତୃତା ଶୁଣିଥିଲି । ମୋର ବାରିପଦା ଉଚ୍ଚଇଂରାଜୀ ବିଦ୍ୟାଳୟର ସହପାଠୀ ଲକ୍ଷ୍ମଣ ମହାପାତ୍ର (ନୃତତ୍ତ୍ୱ ବିଭାଗର ଛାତ୍ର) ଏଇ ସମ୍ମିଳନୀର ଅନ୍ୟତମ ଉଦ୍‌ଯୋକ୍ତା ଥିଲେ ।

୧୯୫୧ ରେ ବିଶ୍ୱଭାରତୀ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେଲା । ସଂସ୍କୃତ, ବଂଗଳା, ହିନ୍ଦୀ,

ଓଡ଼ିଆ, ଇଣ୍ଡୋଲଜି ଆଦିରେ ଏମ.ଏ. ଶ୍ରେଣୀ ଖୋଲିଲା । ଗବେଷଣାକର୍ମୀ ଓ ଶିକ୍ଷକମାନଂକୁ ଉଚ୍ଚ ଅଧ୍ୟୟନ ପାଇଁ ସୁଯୋଗ ଦିଆଗଲା । ମୁଁ ଓଡ଼ିଆରେ ଏମ.ଏ. ପଢ଼ିବା ପାଇଁ ସୁଯୋଗ ପାଇଲି । ଇତିହାସ ନ ପଢ଼ି ଓଡ଼ିଆ ପଢ଼ିବା ଫଳରେ ଓଡ଼ିଆରେ କିଛି ମୌଳିକ ରଚନା ଓ ଆଲୋଚନା ଲେଖିବା ସମ୍ଭବ ହେଲା । ସାପ୍ତାହିକ ପାଠଚକ୍ରରେ ଯେଉଁ ପ୍ରବନ୍ଧ ସବୁ ପଢୁଥିଲି ତାହା ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା । କବିତା, ଗଳ୍ପ, ଭ୍ରମଣାଲେଖ୍ୟ ରଚନାରେ ହାତଦେଇ କିଛି ସାଫଲ୍ୟ ଲାଭ କରିଥିଲି । ତେବେ ଇଂରେଜୀରେ ଓଡ଼ିଆ କବିତା ଅନୁବାଦ ମଧ୍ୟ ପ୍ରକାଶ ପାଇଁ ଚେଷ୍ଟା କରୁଥିଲି । ଇଂରେଜୀ ଆଲୋଚନାତ୍ମକ ପ୍ରବନ୍ଧ ଲେଖି ସାମାନ୍ୟ ଅର୍ଥଲାଭ ହେଉଥିଲା ।

ଓଡ଼ିଆ ବିଭାଗର ପ୍ରାଥମିକ ଇତିହାସ ସଂଗ୍ରହ ପାଇଁ ସାରଂକ ନିର୍ଦ୍ଦେଶରେ ବାଲେଶ୍ୱର କଲେଜର ଅଧ୍ୟକ୍ଷ ପ୍ରହ୍ଲାଦ ପ୍ରଧାନଂକୁ ଚିଠି ଲେଖିଥିଲି । ତାଂକର ଚିଠିରୁ ତାଂକର ମନରେ ଶାନ୍ତିନିକେତନ ଛାଡ଼ି ଓଡ଼ିଶା ଫେରିବାରେ ଯେ କିଛି କ୍ଷୋଭ ଥିଲା ତାହା ଜଣାଯାଏ ।

ବାଲେଶ୍ୱର

୬।୨।୫୨

ପ୍ରିୟ ନରେନ୍ଦ୍ର ମିଶ୍ରେ

ପ୍ରଣାମ ।

"ମୁଁ ତୁମର ଚିଠି ପାଇଲି । ଓଡ଼ିଆ ସାହିତ୍ୟ ପରିଷଦର ଯେଉଁ ଇତିହାସ ସଂଗ୍ରହର ପ୍ରସ୍ତାବ ଅଛି, ଏହା ଗୋଟିଏ ମହତ୍ ଉଦ୍ଦେଶ୍ୟ । କିନ୍ତୁ ମୋର ସ୍ମୃତିକଥା ଏକାନ୍ତ ନିଷ୍ପ୍ରୟୋଜନ । ମୋର ସମୟତକ ବାଦ ଦେଲେ ମଧ୍ୟ ଇତିହାସର କୌଣସି ତ୍ରୁଟି ଘଟିବ ନାହିଁ । ଧରି ନିଆଯାଉ ଯେ -ସେଇ ବିଭାଗଟି ମୋ ପରେ ଗଢ଼ିଉଠିଲା । ମୁଁ କେବେ ଆପତ୍ତି କରିବି ନାହିଁ । ମୁଁ ସେ ସବୁ ଭୁଲିଯାଇଛି । ମୋତେ ସଂପୂର୍ଣ୍ଣ ବିଚ୍ଛିନ୍ନ କରିଦିଆଯାଇଛି ମଧ୍ୟ । ଅନେକଂକର ଧାରଣା, ମୋର କୌଣସି ଦାନ ନାହିଁ ; ମୋ ବେଳେ କିଛି କାମ ହୋଇନାହିଁ ଏବଂ ମୁଁ ଓଡ଼ିଆ ଜାଣେ ନାହିଁ । ମୋର 'ସ୍ମୃତିକଥା' ଅନ୍ତର୍ଭୁକ୍ତ କଲେ ଅନେକ ସ୍ୱର୍ଗତଃ ଓ ଭୂଗତ ଆତ୍ମାର୍ କଷ୍ଟ ହେବ । ଏଣୁ ଏହି କାମରୁ ମୁଁ କ୍ଷାନ୍ତ ରହିଲି ।"

ପ୍ରହ୍ଲାଦ ସାର୍ ଚୀନରୁ ଶାନ୍ତିନିକେତନ ଫେରିବା ବେଳେ ଆମେମାନେ ତାଙ୍କୁ ସମ୍ବର୍ଦ୍ଧନା କରିଥିଲୁ । ସେ ଚୀନରେ ଥିବା ସମୟରେ ଚୀନରେ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠା ହେଲା । ତାଙ୍କର ଅନୁଭୂତି ବର୍ଣ୍ଣନା କରି ସେ ଯେଉଁ ଭାଷଣ ଦେଇଥିଲେ ,ତାର ବିସ୍ତୃତ ବିବରଣୀ ମୁଁ ସମାଜକୁ ପଠାଇଥିଲି । ତାହା ପ୍ରଥମ ପୃଷ୍ଠାରେ ପ୍ରଧାନ ସମ୍ବାଦ ହୋଇ ପ୍ରକାଶ ପାଇଥିଲା । ଚୀନରୁ ଫେରି ଅଧ୍ୟାପକ ପ୍ରଧାନ ରେଭେନ୍ସାରେ ଯୋଗ ଦେଲେ । ମାତ୍ର ତାଙ୍କ ପରିବାର ଶାନ୍ତିନିକେତନରେ ଥିଲେ । ପିଲାମାନଙ୍କର ପଢ଼ା ଶେଷ ହେବା ପରେ ସେମାନେ ଓଡ଼ିଶା ଫେରିଥିଲେ । ସାର୍ ଶାନ୍ତିନିକେତନ ଆସିଲେ ଆମ ପାଠଚକ୍ର ଓ ପିକ୍ନିକ୍ ଆଦିରେ ଯୋଗ ଦେଉଥିଲେ । ତାଂକର ସରସ ବ୍ୟକ୍ତିତ୍ୱ, ସ୍ନେହଶୀଳ ହୃଦୟ ଆମକୁ କିଣି ନେଉଥିଲା । ଶାନ୍ତିନିକେତନରେ ଯେପରି,

ଓଡ଼ିଶା ଫେରିବା ପରେ ବି ସେଇପରି ତାଙ୍କର ସ୍ନେହ ଓ ତାଂକ ପରିବାରରେ ପ୍ରବେଶ ମୋ ପାଇଁ ଅବାରିତ ଥିଲା । ଶେଷ-ବୟସରେ ସେ ଥରେ ଶାନ୍ତିନିକେତନ ଆସିଥିଲାବେଳେ ତାଂକର ସ୍ମୃତି-କଥା ଟେପ କରାଯାଇଥିଲା । ଓଡ଼ିଶା ସାଂସ୍କୃତିକ ସମାଜ, ସମ୍ବଲପୁର ପ୍ରକାଶିତ 'ଉପେକ୍ଷିତ ବରପୁତ୍ର' ସଂକଳନରେ ମୁଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲି ।

ଓଡ଼ିଆ ଏମ.ଏ.ରେ ଓଡ଼ିଆ ସାହିତ୍ୟ ପାଇଁ ମାତ୍ର ଦୁଇଟି ପତ୍ର ଥିଲା । ଗୋଟିଏ ପ୍ରାଚୀନ ଓ ଅନ୍ୟଟି ଆଧୁନିକ । ଭାଷାତତ୍ତ୍ୱ ଓ ପାଲି-ପ୍ରାକୃତ ଦୁଇଟି ପତ୍ର ଓ ଅନ୍ୟଟି ଭାରତୀୟ ଭାଷା ଓ ସାହିତ୍ୟ ଗୋଟିଏ ପତ୍ର । ମୁଁ ହିନ୍ଦୀ ଓ ମୋର ସହାଧ୍ୟାୟୀ ଦୁର୍ଗାଚରଣ ପରିଡ଼ା ଓ ନରେନ୍ଦ୍ର ମୋହନ ବେହେରା ବଂଗଳା ନେଇଥିଲେ । ତିନିଶହ ନମ୍ବର ଥେସିସ୍ ପାଇଁ ଥିଲା । ମୋର 'ବଳରାମ ଦାସ ଓଡ଼ିଆ ରାମାୟଣ'-ଏଇ ପାଠ୍ୟକ୍ରମରେ ଲେଖାହୋଇଥିଲା । ଏହାର ପରୀକ୍ଷକ ପଣ୍ଡିତ ନୀଳକଣ୍ଠଙ୍କ ସୁପାରିଶ କ୍ରମେ ବିଶ୍ୱଭାରତୀ ଗବେଷଣା ଗ୍ରନ୍ଥ ରୂପେ ପ୍ରକାଶିତ ହୋଇଥିଲା । ପଣ୍ଡିତ ନୀଳକଣ୍ଠଂକ ମୁଖବନ୍ଧ ଏହାର ମହତ୍ତ୍ୱ ବଢ଼ାଇ ଦେଇଥିଲା ।

ପିଏଚ.ଡ଼ି. ପାଇଁ ମୁଁ ଆଧୁନିକ ଓଡ଼ିଆ କାବ୍ୟଧାରା ବାଛିଥିଲି । ଆଧୁନିକ କବିତା ଉପରେ କାମ କରୁଥିବା ବେଳେ ଇଂରେଜୀରେ ବି ଓଡ଼ିଆ କବି ଓ କବିତା ଉପରେ ପ୍ରବନ୍ଧ ଲେଖୁଥିଲି ; ଓଡ଼ିଆ କବିତାର ଅନୁବାଦ କରୁଥିଲି । ଗଙ୍ଗାଧର ଶତବାର୍ଷିକୀ ସମୟରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପତ୍ରିକାରେ ଗଙ୍ଗାଧରଙ୍କ କବିତାର ଅନୁବାଦ ଓ ଏକ ଆଲୋଚନା ପ୍ରକାଶ ପାଇଥିଲା । ଗଙ୍ଗାଧରଙ୍କ ଅନୁରାଗୀ କେଶବଚନ୍ଦ୍ର ମେହେର ମୋତେ ଚିଠି ଲେଖିଥିଲେ -

ସମ୍ବଲପୁର
୨୭.୬.୫୬

ପ୍ରିୟ ନରେନ୍ଦ୍ର ବାବୁ

ମୋର ନମସ୍କାର ଗ୍ରହଣ କରିବେ ।

P.E.N. ପତ୍ରିକାରେ ୧୯୫୬ ଫେବୃଆରୀ ସଂଖ୍ୟାରେ ଆପଣଙ୍କ ପ୍ରଚେଷ୍ଟାରେ କେତୋଟି ଓଡ଼ିଆ କବିତା ଅନୂଦିତ ହୋଇ ପ୍ରକାଶିତ ପାଇବାର ଦେଖିଲି । 'ଅର୍ଘ୍ୟଥାଳୀ'ର 'ଖଦ୍ୟୋତର ଖେଦ'କୁ ଆପଣ ଅନୁବାଦ କରିଛନ୍ତି ଓ ତାହା ଆଶତୀତ ଭାବରେ ଭଲ ହୋଇଛି । ଗଙ୍ଗାଧରଂକର ଆଉରି କେତୋଟି ମୂଲ୍ୟବାନ କବିତାର ଏ ରୂପ ଅନୁବାଦ ହୋଇପାରିଲେ ଜାତିର ଗୋଟିଏ ବଡ଼ କାମ ହୁଅନ୍ତା । ପ୍ରତିପତ୍ର ଦେଇ ଆନନ୍ଦିତ କରାଇବା ହେବେ ।

ଆପଣଙ୍କର
କେ. ମେହେର

ଗବେଷଣା କର୍ମୀ ଭାବରେ ମୁଁ ଏମ୍.ଏ. ପାଶ କରିବା ପରେ ମୋ ବୃତ୍ତି ଟ୧୦୦/- ହୋଇଥିଲା । ମୁଁ ମୋ ସ୍ତ୍ରୀଙ୍କୁ ଘେନି ଗୋଟିଏ ଚାଳଘର ଭଡ଼ାନେଇ ରହିଲି । ସେଠି ବିଜୁଳି ଆଲୁଅ

ନ ଥିଲା । ତେଣୁ ନବ ନିର୍ମିତ ଛାତ୍ରାବାସରେ ପାଇଥିବା ଦୁଇଟି କୋଠରୀ ଛାଡ଼ି ନ ଥିଲି । ଗୋଟିଏ ଘରେ ମୋ ବହିପତ୍ର ରଖି ଅନ୍ୟଘରେ ପଢ଼ାପଢ଼ି କରୁଥିଲି । ସେ ସମୟରେ ବଂଧୁମାନେ ଆସିଲେ ସେଠାରେ ସେମାନଙ୍କୁ ରଖାଉଥିଲି ।

ସାରଙ୍କ ସଂଗରେ ଲୋକସାହିତ୍ୟ ସଂଗ୍ରହ କାର୍ଯ୍ୟରେ ଓଡ଼ିଶାର ବହୁସ୍ଥାନ ବୁଲି ଦୁର୍ଲଭ ଅନୁଭୂତି ଲାଭ କରିଥିଲି । ମେଘାସନ, ଗନ୍ଧମାର୍ଦ୍ଦନ, ଖଣ୍ଡାଧାର ଆଦିର ଅବିସ୍ମରଣୀୟ ପ୍ରାକୃତିକ ଦୃଶ୍ୟ ଦେଖିଥିଲି । ଦୀର୍ଘ ପନ୍ଦର ଦିନ କାଶ୍ମିର ଭ୍ରମଣରେ ଯାଇ ପ୍ରଥମେ ଉଡ଼ାଜାହାଜ ଚଢ଼ିଥିଲି ।

କଟକରେ ନବଭାରତ ପ୍ରେସରେ ପଣ୍ଡିତ ନୀଳକଣ୍ଠଂକ ସଂଗରେ ପ୍ରାୟ ଗୋଟିଏ ମାସ ରହିଥିଲି, ସେଠାରେ ବହୁ ବିଶିଷ୍ଟ ବ୍ୟକ୍ତିଂକ ସାନ୍ନିଧ୍ୟ ଓ ନୀଳକଣ୍ଠଂକ ସୁବୃହତ୍ ଓ ସୁନିର୍ବାଚିତ ବ୍ୟକ୍ତିଗତ ଗ୍ରନ୍ଥାଗାରରେ ଅତି ଦୁର୍ଲଭ ପୁସ୍ତକସବୁ ପାଠ କରିବାର ସୁଯୋଗ ପାଇଥିଲି । ଏହି ସମୟରେ କବି ରାଧାମୋହନ ଗଡ଼ନାୟକ ଓ ଦେବେନ୍ଦ୍ର ଶତପଥୀଙ୍କ ସଂଗରେ ଦଳେଇ ଘାଇ ବନ୍ୟା ଦେଖିବା ପାଇଁ ସାଇକେଲରେ କଟକରୁ ଦଳେଇ ଘାଇ ପର୍ଯ୍ୟନ୍ତ ଯାଇଥିଲି । ବନ୍ୟାର ଏଭଳି କରାଳ ଦୃଶ୍ୟ, ବନ୍ୟାପୀଡ଼ିତଙ୍କର ମର୍ମାନ୍ତିକ ଦୁଃଖ ଦୁର୍ଦ୍ଦଶା ଜୀବନରେ ଆଉ କେବେ ଦେଖିନାହିଁ ।

ବିଶ୍ୱଭାରତୀରେ ଓଡ଼ିଆ ଏମ.ଏ. କ୍ଲାସ ଖୋଲିବାପରେ ଶ୍ରୀ ଚିନ୍ତାମଣି ବେହେରା ଭଦ୍ରକ କଲେଜ ଛାଡ଼ି ଦ୍ୱିତୀୟ ଅଧ୍ୟାପକ ହୋଇ ଆସିଲେ । ମାତ୍ର କିଛିଦିନ ପରେ ବିଶ୍ୱଭାରତୀ ଛାଡ଼ି ଓଡ଼ିଶା ଶିକ୍ଷାବିଭାଗରେ ଅଧ୍ୟାପକ ହେଲେ । ତାଂକ ସ୍ଥାନରେ ଦେବୀପ୍ରସନ୍ନ ପଟ୍ଟନାୟକ ଅସ୍ଥାୟୀ ଅଧ୍ୟାପକ ଭାବରେ ଆସିଲେ । ସେ ମଧ୍ୟ ସରକାରୀ ଚାକିରୀ ପାଇ ଚାଲିଗଲେ । ମୁଁ ଗବେଷଣା କର୍ମୀ ଥିଲେ ବି ଅଧ୍ୟାପନା କରୁଥିଲି । ବିଶେଷତଃ ଛାତ୍ରମାନଂକ ଚର୍ଚ୍ଚା ନିବନ୍ଧ କାର୍ଯରେ ବହୁତ ସମୟ ବିତୁଥିଲା । ପି ଏଚ.ଡ଼ି. ପାଇଁ ଦୁଇବର୍ଷ ଆବାସିକ ଭାବରେ ରହିବା ବାଧ୍ୟତାମୂଳକ ଥିଲା । ତେଣୁ ମୋତେ ଏଠି ରହିବାକୁ ହେଉଥିଲା । ଖୁବ୍ ସମ୍ଭବ ୧୯୫୭ ରେ ଦେବୀବାବୁ ସରକାରୀ ଚାକିରୀ ଛାଡ଼ି ବିଶ୍ୱଭାରତୀରେ ସ୍ଥାୟୀଭାବରେ ଯୋଗଦେଲେ । ମୁଁ କେନ୍ଦୁଝର ବିଜ୍ଞାନ କଲେଜର ଅଧ୍ୟାପକ ହେଲି । ଶ୍ରୀ ଅସିତ କବି ଗବେଷକ ହୋଇ ଆସିଲେ । ଦେବୀବାବୁ ଏଠାରୁ ଆମେରିକା ଗବେଷଣା ପାଇଁ ଗଲେ । କେନ୍ଦୁଝରରେ ଗୋଟିଏ ବର୍ଷ ରହିବାପରେ ବିଶ୍ୱଭାରତୀରେ ଅସ୍ଥାୟୀ ଅଧ୍ୟାପକ ନିଯୁକ୍ତି ପାଇଥିଲି । ମାତ୍ର ସେଠି ଦୁଇ ବର୍ଷ ପାଇଁ ରହିବାକୁ ରାଜି ହୋଇ ମୁଁ ଯୋଗ ଦେଇଥିଲି । ନୂଆ କଲେଜରେ ଯେପରି ଅବ୍ୟବସ୍ଥା ନ ହୁଏ କର୍ତ୍ତୃପକ୍ଷ ସେଥିପ୍ରତି ଦୃଷ୍ଟିଦେଇ ଏପରି ପ୍ରତିଶ୍ରୁତି ଆଦାୟ କରିଥିଲେ । କେନ୍ଦୁଝରରେ ଏକବର୍ଷ ଏଗାର ମାସ ଥିଲି ।କେନ୍ଦୁଝରରେ ଛୋଟରାୟ ସାହେବଂକର ଏକ ବୃହତ୍ ଗ୍ରନ୍ଥାଗାର ଥିଲା । ମୁଁ କଲେଜ ଗ୍ରନ୍ଥାଗାର ଦାୟିତ୍ୱରେ ଥିଲି । ବହିକିଣାରେ କୋଡ଼ିଏ ହଜାର ଟଙ୍କା ପର୍ଯନ୍ତ ବ୍ୟୟର ବ୍ୟବସ୍ଥା ଥିଲା । ସେଠାରେ ଓଡ଼ିଆ ଟାଇପରାଇଟର ଅଳ୍ପ ମୂଲ୍ୟରେ କିଣିବାକୁ ମିଳିଲା । କଲେଜ ଲାଇବ୍ରେରୀରେ ବସି ଲେଖାଲେଖି କରିବାକୁ ବହୁ ସମୟ

ମିଳୁଥିଲା । ମୋ ଥେସିସ୍ ପାଇଁ ଶାନ୍ତିନିକେତନରେ ଥିବାବେଳେ ପଢ଼ାପଢ଼ି କରି ଯାହା ନୋଟ କରିଥିଲି, କେନ୍ଦୁଝରରେ ହିଁ ଥେସିସ୍‌ର ପ୍ରଥମ କପି ପ୍ରସ୍ତୁତ କରିଥିଲି । ୧୯୫୯ ଜୁଲାଇରେ ମୁଁ ଫକୀରମୋହନ କଲେଜରେ ସ୍ଥାୟୀ ସରକାରୀ ଚାକିରୀରେ ନିଯୁକ୍ତ ହେଲି । ଇତିମଧ୍ୟରେ ବିଶ୍ୱଭାରତୀରେ ସାର୍ ତୃତୀୟ ଅଧ୍ୟାପକ ପଦ ସୃଷ୍ଟି କରାଇଥିଲେ । ମୁଁ ଥରେ ନିଯୁକ୍ତି ପାଇ ଏଠି ଯୋଗ ଦେଇ ନଥିବାରୁ ମୁଁ ପ୍ରାର୍ଥୀ ଥିଲେ ବି ମୋତେ ସାକ୍ଷାତକାର ପାଇଁ ଡକାହୋଇ ନଥିଲା। ସେଥିର ମାତ୍ର ଦୁଇ ଜଣ ପ୍ରାର୍ଥୀଙ୍କୁ ଡକାଯାଇଥିଲା ଓ କାହାରିକୁ ବଛାଯାଇନଥିଲା । ବାଲେଶ୍ୱରରେ ଥାଇ ମୁଁ ପି ଏଚ.ଡ଼ି. ଥେସିସ୍ ଦେଇ ସାରିଥିଲି । ଦ୍ୱିତୀୟ ଥର ନିର୍ବାଚନରେ ୭/୮ ଜଣ ପ୍ରାର୍ଥୀଙ୍କୁ ଡ଼କାଯାଇଥିଲା । ମୁଁ ଚାରିଟି ଇନ୍‌କ୍ରିମେଣ୍ଟ ପାଇ ନିର୍ବାଚିତ ହୋଇଥିଲି । ୧୯୬୦ ଏପ୍ରିଲ ଦୁଇ ତାରିଖରେ ଓଡ଼ିଶାର ସରକାରୀ ଚାକିରିଛାଡ଼ି ବିଶ୍ୱଭାରତୀରେ ଅଧ୍ୟାପକ ଭାବରେ ଯୋଗ ଦେଲି ।

ଯାହାଙ୍କୁ ବ୍ୟକ୍ତିଗତ ଆକର୍ଷଣରେ ମୁଁ ବିଶ୍ୱଭାରତୀ ଆସିଥିଲି ବର୍ଷଟିଏ ନ ପୂରୁଣୁ ୨୮ ଫେବୃଆରୀ ୧୯୬୧ ରେ ସେ ରେଭେନ୍‌ସା କଲେଜକୁ ଫେରିଗଲେ । ବିଭାଗରେ ଦ୍ୱିତୀୟ କେହି ନଥିଲେ । ଏମ.ଏ.ପାଶ କରିବା ସଂଗେ ରାଘବାନନ୍ଦ ନାୟକଂକୁ ନିଯୁକ୍ତ କରାଇଲି । ଏପ୍ରିଲରେ ସାର୍ ରହୁଥିବା ଓଡ଼ିଶା ସରକାରଂକ ଦାନରେ ନିର୍ମିତ ରତନପଲ୍ଲୀ କ୍ୱାର୍ଟର୍ସ୍‌ରେ ପୂର୍ବପଲ୍ଲୀ ଘରୁ ଆସି ବସାବାନ୍ଧିଲି । ଜୁଲାଇ ମାସରେ ଦେବୀବାବୁ ଓ ସୁଲକ୍ଷଣା ଦେବୀ ଆମେରିକାରୁ ଫେରି ମୋ ବସାରେ ଉଠିଲେ । ୧୨.୭.୬୧ରେ ଦେବୀବାବୁଙ୍କୁ କର୍ଣ୍ଣେଲ ବିଶ୍ୱବିଦ୍ୟାଳୟରେ Ph.D. ଲାଭ ଲାଗି ଅନ୍ନଦାବାବୁଙ୍କ ସଭାପତିତ୍ୱରେ ସମ୍ବର୍ଦ୍ଧନା ଜଣାଇଲୁଁ । ଦେବୀବାବୁ ଉତ୍ତରାୟଣ ପଶ୍ଚିମପଟରେ ଶ୍ରୀପଲ୍ଲୀରେ କ୍ୱାଟର୍ସ୍ ପାଇ ରହିଲେ । ଦେବୀବାବୁଙ୍କ ସରସ ବ୍ୟକ୍ତିତ୍ୱ, ପ୍ରସାରିତ ଦୃଷ୍ଟି ନୂତନ ଜୀବନ ସଞ୍ଚାର କଲା । ଅଗଷ୍ଟ ମାସରେ ରବୀନ୍ଦ୍ର ଶତବାର୍ଷିକୀରେ 'ରବୀନ୍ଦ୍ରନାଥ ଓ ଭାରତୀୟ ସାହିତ୍ୟ' ସପ୍ତାହ ବ୍ୟାପୀ ସମ୍ମିଳନୀରେ କାଳିନ୍ଦୀ ବାବୁ, ଗୋପୀବାବୁ ଓ ସାର୍ (କୁଂଜବାବୁ) ଯୋଗଦେଇ ଥିଲେ । ସାହିତ୍ୟିକମାନଂକୁ ଓଡ଼ିଆ ସାହିତ୍ୟ ପରିଷଦରେ ସମ୍ବର୍ଦ୍ଧନା ଦିଆଯାଇଥିଲା । ଗୋଟିଏ ଅଧିବେଶନରେ ଅନ୍ନଦାବାବୁଂକ ସଭାପତିତ୍ୱରେ କାଳିନ୍ଦୀ ବାବୁ, ଗୋପୀବାବୁ ପ୍ରବନ୍ଧ ପାଠ କଲେ । କୁଞ୍ଜବାବୁ 'ଲୋକସାହିତ୍ୟ' ପ୍ରବନ୍ଧ ପଢ଼ିଲେ । ଏହି ସମସ୍ତ ପ୍ରବନ୍ଧ, ଆଉ କେତୋଟି ଅନ୍ୟ ଲେଖା ଓ ଅନୁବାଦ ଦେଇ 'ରବୀନ୍ଦ୍ର ସ୍ମରଣିକା' ପ୍ରକାଶ ପାଇଥିଲା । ସରକାରୀ ଚାକିରୀ ଛାଡ଼ି ଆସି ଖଗେଶ୍ୱର ବାବୁ ୧୯୬୨ରେ ଯୋଗଦେଲେ । ୩୧.୬.୬୨ରେ 'ବକୁଳ ବିଥୀ'ରେ ତାଙ୍କୁ ମୋ' ସଭାପତିତ୍ୱରେ ସମ୍ବର୍ଦ୍ଧନା କରାଯାଇଥିଲା । ଦେବୀବାବୁ ବହୁସମୟରେ ବାହାରକୁ ଯାଉ ଥିଲେ । ଖଗେଶ୍ୱରବାବୁ ଆସିବା ପରେ ବିଭାଗ କାର୍ଯ୍ୟର ଚାପ ମୋ ଉପରୁ କମିଲା । ମୁଁ ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ୍ କମିଶନ ଫେଲୋସିପ୍ ପାଇ ୧୯.୧୨.୬୩ ରେ ବିଭାଗରୁ ଗୋଟିଏ ବର୍ଷ ଛୁଟିରେ ଥାଇ 'ଆଧୁନିକ କାବ୍ୟଧାରା: ନବଜାଗରଣ ଯୁଗ' ରଚନାରେ ଲାଗିଲି । କୁଞ୍ଜବାବୁଂକ ସ୍ଥାନରେ ପ୍ରବୀଣ ଅଧ୍ୟାପକ ଶ୍ରୀନିବାସ ମିଶ୍ର ଆସିଲେ । ଅବଶ୍ୟ ସେ ଲିଅନ ରଖି ଆସିଥିଲେ । ୩.୯.୬୪ ରେ

ଦେବୀବାବୁ ବିଭାଗରୁ ବିଦାୟ ଘେନି ପୁନା ଗଲେ । ତାଂକ ସ୍ଥାନରେ କୃଷ୍ଣଚରଣ ସାହୁ ଆସି ଓଡ଼ିଆ ବିଭାଗର ମୁଖ୍ୟଭାବରେ ଯୋଗଦେଲେ । ୧.୮.୬୬ ରେ ଶ୍ରୀନିବାସବାବୁ ରିଡ଼ର ହେଲେ । କୃଷ୍ଣବାବୁ ପୁଣି ତାଙ୍କର ପୂର୍ବ କର୍ମସ୍ଥଳ ରାଞ୍ଚି ବିଶ୍ୱବିଦ୍ୟାଳୟକୁ ଫେରିଗଲେ । ୧୯୭୦ ଡିସେମ୍ବର ମାସରେ ମୁଁ ରିଡ଼ର ଓ ବିଭାଗର ମୁଖ୍ୟ ଦାୟିତ୍ୱ ନେଲି ଓ ୧୯୭୮ ଏପ୍ରିଲରେ ଖଗେଶ୍ୱର ବାବୁ ପ୍ରଫେସର ହୋଇ ମୋତେ ବିଭାଗୀୟ ଦାୟିତ୍ୱରୁ ମୁକ୍ତ କଲେ । ଜଣେ ପୁରାତନ ବନ୍ଧୁ, ବିଶ୍ୱଭାରତୀର ସମସ୍ୟା ବିଷୟରେ ସଚେତନ, ଜଣେ ବିଚକ୍ଷଣ ସଂଗଠକ, ବିଦଗ୍ଧ, ସ୍ୱାଭିମାନୀ ଓଡ଼ିଆ ପ୍ରେମୀଂକ ହାତରେ ବିଭାଗର ଉଜ୍ଜଳ ଭବିଷ୍ୟତ ପାଇଁ ଉଲ୍ଲସିତ ହେଲି ।

ବିଶ୍ୱଭାରତୀରେ ଓଡ଼ିଆ ପ୍ରଫେସର ପଦ ସୃଷ୍ଟି ବହୁଦିନର ସ୍ୱପ୍ନ । କଲିକତା ପରେ ଏଇଠାରେ ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରଥମ ଓଡ଼ିଆ ବିଭାଗ କାର୍ଯ କରିଥିଲା । ୯।୬।୬୪ରେ ମୋ ଦିନଲିପିରେ ଲେଖିଥିଲି-ଗତ ୧୩ବର୍ଷ ଧରି ଏକ କ୍ଷୁଦ୍ର ବିଶ୍ୱବିଦ୍ୟାଳୟରେ କ୍ଷୁଦ୍ରତମ ବିଭାଗ ରୂପେ ଓଡ଼ିଆ ବିଭାଗ ବଡ଼ ନଉଛଣାଭାବରେ ରହିଆସିଛି । ବିଭାଗର ମର୍ଯାଦା ଓ ଓଡ଼ିଆର ପ୍ରତିଷ୍ଠା ଲାଗି ଏହି ବିଭାଗରେ ଜଣେ ପ୍ରଫେସର ନିଯୁକ୍ତ ହେବା ଦରକାର । ସେଇଦିନ ନେହରୁ ଶ୍ରାଦ୍ଧ ବିଶେଷାଙ୍କ 'ସମାଜ'ରେ ମୋର ''ବିଶ୍ୱଭାରତୀ ଓଡ଼ିଆ ବିଭାଗର ବିକାଶ ଯୋଜନା ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ସେଇବର୍ଷ 'ସମାଜ' ବାର୍ଷିକ ସଂଖ୍ୟାରେ ଓଡ଼ିଆରେ ଉଚ୍ଚତର ଗବେଷଣା ସଂସ୍ଥା ପ୍ରସଙ୍ଗରେ ପ୍ରବନ୍ଧ ଲେଖିଥିଲି । ତାକୁ ପଢ଼ି ସାର୍ (କୁଞ୍ଜବାବୁ) ଲେଖିଥିଲେ 'ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାରେ ତୁମ ପ୍ରବନ୍ଧଟି ପଢ଼ି ଖୁସି ହେଲି । .....ଓଡ଼ିଆଙ୍କୁ ଓଡ଼ିଆ କରିବା ଲାଗି ଏପରି କେତେକ ପ୍ରବନ୍ଧ ଦରକାର । ....ଆତ୍ମଗ୍ଲାନି ମଧ୍ୟରେ ଜାତି ମରି ମରି ଯାଉଛି । ସାହିତ୍ୟ ଜରିଆରେ ବିଶ୍ୱଜନୀନ ଭାବ ସଂଗେ ଜାତି ପ୍ରୀତି, ସାହିତ୍ୟ ପ୍ରୀତି ଜାଗ୍ରତ କରି ରଖିବାକୁ ହେବ'' । କଟକ .୧୭.୭.୬୪: ଏଇ ଚିଠିରେ କେବଳ ଗ୍ରାହକତାନ ଥିଲା, ଥିଲା ଆନ୍ତରିକ ଭାବେ କାର୍ଯ ସାଧନ ପାଇଁ ଆକୁଳତା । ସେ ୩୦.୮.୬୪ ରେ ଶାନ୍ତିନିକେତନ ଆସିଥିଲେ ବିଶ୍ୱଭାରତୀରେ ଗୋପବନ୍ଧୁ ଚେୟାର ଖୋଲିବା ପାଇଁ 'ସମାଜ'ର ପୃଷ୍ଠପୋଷକତାର ଅଂଗୀକାର ଘେନି । ଏଇ ପ୍ରସଂଗରେ ସାର୍ ଗୋଟିଏ ଆବେଦନ ପତ୍ର ଉପାଚାର୍ଯଙ୍କୁ ଦେଇ ବିଶ୍ୱଭାରତୀରେ ଓଡ଼ିଆ ପ୍ରଫେସର ପଦର ଆଶୁ ପ୍ରତିଷ୍ଠା ପାଇଁ ପ୍ରସ୍ତାବ ଦେଇଥିଲେ । କିନ୍ତୁ କିଛି ଆଗ୍ରହ ବିଶ୍ୱଭାରତୀରୁ ପ୍ରକାଶ ପାଇ ନଥିଲା । ପରେ ଉତ୍କଳ ବିଶ୍ୱବିଦ୍ୟଳୟରେ 'ସତ୍ୟବାଦୀ ଚେୟାର' ପାଇଁ 'ସମାଜ' ଆଂଶିକ ଆର୍ଥିକ ପୃଷ୍ଠପୋଷକତା କରିଥିଲେ । ଆମେ ମାନେ କେବେ ଉଦ୍ୟମରୁ ବିରତ ହୋଇ ନ ଥିଲୁ, ଦେବୀବାବୁ ବିଶ୍ୱଭାରତୀ ଛାଡ଼ି ଯାଇଥିଲେ ବି ବରାବର ଉତ୍ସାହ ଦେଉଥିଲେ । ୮।୪।୭୧ ରେ ମହୀଶୂରରୁ ସେ ମୋତେ ଲେଖିଥିଲେ-''ଶରତ କର ଓଡ଼ିଶାର ଶିକ୍ଷାମନ୍ତ୍ରୀ - କର ଭାଇମାନେ ଓଡ଼ିଆ ସାହିତ୍ୟ ଅନୁରାଗୀ । ଆପଣ ତାଙ୍କୁ ଚିଠି ଲେଖନ୍ତୁ-ବର୍ଷକୁ ୧୫ ହଜାର ଟଙ୍କା ଦେବା ଓଡ଼ିଶା ସରକାର ପକ୍ଷରେ ଏମିତି କିଛି ବଡ଼କଥା ନୁହେଁ-ସେତିକି ଦେଲେ ସେଠିଗୋଟିଏ ପ୍ରଫେସର ପଦ ଖୋଲାଯାଇପାରିବ ।

ଏ ଭିତରେ ଇଉନିୟନ ପବ୍ଲିକ ସର୍ଭିସ କମିସନ ମୋ ଚାକିରିକୁ ମଞ୍ଜୁରୀ ଦେଇଛନ୍ତି-ଯା ଫଳରେ ନିୟମିତ ଭାବେ । (ଅସ୍ଥାୟୀ ହେଲିବି) କେନ୍ଦ୍ର ଶିକ୍ଷା ମନ୍ତ୍ରଣାଳୟରେ ମୋ ଚାକିରୀ ସାମିଲ ହୋଇଗଲା । ସମୟ ହେଲେ ଚିଠି ଲେଖିବେ-ବିଭାଗର ସମସ୍ତଙ୍କୁ ମୋର ଶୁଭେଚ୍ଛା ଦେବେ । ଆପଣ ସପରିବାର ଆମର ପ୍ରୀତି ନମସ୍କାର ଜାଣିବେ । ଇତି ।

ଆପଣଙ୍କର

ଦେବୀପ୍ରସନ୍ନ

ମୁଁ କିନ୍ତୁ କେନ୍ଦ୍ର ସରକାର ଅର୍ଥରେ ପ୍ରଫେସର ପଦ ସୃଷ୍ଟି ଚାହୁଁଥିଲି । ଶିକ୍ଷାସମିତିରେ ମୁଁ ସଭ୍ୟ ହେଲି । ଇମାରଜେନ୍‌ସି ସମୟରେ ସ୍ୱଳ୍ପ ସଂଖ୍ୟକ ସଭ୍ୟଙ୍କୁ ଘେନି ଗଢ଼ାଯାଇଥିବା ଶିକ୍ଷାସମିତିରେ ମଧ୍ୟ ସଭ୍ୟ ଥିଲି । ମୋ ପ୍ରସ୍ତାବର ବିରୋଧ କରି ଅନ୍ୟସବୁ ଭାରତୀୟ ଭାଷାରେ ବିଭାଗ ଖୋଲିବାକୁ ପ୍ରସ୍ତାବ ହେଲା । ଉପାଚାର୍ଯ ପ୍ରତୁଲଗୁପ୍ତ ମୋତେ ସମର୍ଥନ କରି ଯୁକ୍ତିକଲେ- ଓଡ଼ିଶା ସରକାରଂକ ଭଳି ଯେଉଁ ସରକାର ପ୍ରାଥମିକ ସାହାଯ୍ୟ ଦେବେ, ସେ ଭାଷାରେ ଅଧ୍ୟାପକ ପଦ ସୃଷ୍ଟି କରାଯିବ । ମାତ୍ର ଓଡ଼ିଆ ବିଭାଗ ପୁରୁଣା ବିଭାଗ । ଏଠି ସ୍ନାତକୋତ୍ତର ଚାଲିଛି । ସେଠାରେ ଅଳ୍ପ ସଂଖ୍ୟକ ଅଧ୍ୟାପକ କିପରି ପରିଶ୍ରମ କରି ବିଭାଗ ଚଳାଉଛନ୍ତି ମୁଁ ନିଜେ ପ୍ରତ୍ୟକ୍ଷ କରିଛି । ତେଣୁ ସେଠି ଅଧିକ ଅଧ୍ୟାପକ ନିଯୁକ୍ତ ହେବା ଆବଶ୍ୟକ । ଏଇ ଭାବରେ ଓଡ଼ିଆ ବିଭାଗରେ ଗୋଟିଏ ଲେକ୍‌ଚରର ଓ ପ୍ରଫେସର ପଦ ସୃଷ୍ଟି ପାଇଁ ପ୍ରସ୍ତାବ ଗୃହୀତ ହେଲା । ପ୍ରଫେସର ପଦର ବିଜ୍ଞାପନ ଦେଖି ଖଗେଶ୍ୱର ବାବୁ ଦିଲ୍ଲୀରୁ ୧୨.୯.୭୭ ରେ ଲେଖିଥିଲେ-

ପ୍ରିୟ ନରେନ୍ଦ୍ରବାବୁ,

ବଧାଇ ଆପଣଂକୁ । ଏତେ ଦିନକେ ଆପଣ ଓଡ଼ିଆଂକ ମାନ ସମ୍ମାନ ସେଠି ରକ୍ଷାକଲେ । ମୁଁ ତ Professor of Oriya ବିଜ୍ଞାପନ ଦେଖି ଚମକି ପଡ଼ିଲି । Reader ପଦଟି ଖୋଲିବା ପାଇଁ ସେ ଦିନ କେତେ କଷ୍ଟ ପଡ଼ିନଥିଲା ! ସେ ତୁଳନାରେ ପ୍ରଫେସର ପଦ ପାଇଁ କେତେ ଯେ ଅଧିକ କାଠଗଡ଼ ପୋଡ଼ିବାକୁ ପଡ଼ିଥିବ, ସେଇକଥା ବିଚାରି ବଧାଇ ଜଣାଇବାକୁ ବେଗ ପାଇଛି । ଛାତ୍ର ସଂଖ୍ୟା ତ କ୍ରମଶଃ ବଢ଼ୁଛି । ପ୍ରଫେସର ପଦ ହୋଇଗଲେ ଆଉ କଥା ନାହିଁ- ଯଥାର୍ଥରେ ସେଠି Oriya Studies ର ଏକ Viable centre ପ୍ରତିଷ୍ଠା ପାଇବ । ......ଆପଣଙ୍କୁ ପିଲାଂକ ପାଇଁ ଗୁଡ଼ାଏ ଭୋଗିବାକୁ ପଡ଼ିଲା । ଭଗବାନ ସେମାନଂକୁ ଭଲରେ ରଖନ୍ତୁ ।....... ମୋ କଥା କଣ ଲେଖିବି । ଜାଣୁଥିବେତ ଦିଲ୍ଲୀକା ଲଡୁ ଖାଇଛି । ନମସ୍କାର

ଖଗେଶ୍ୱର

(47, Tagorpada, New Delhi-9)

ବିଶ୍ୱଭାରତୀ ଓଡ଼ିଆ ବିଭାଗ ଛାଡ଼ିଯାଇଥିବା ଯେଉଁ ସବୁ ତରୁଣ ଅଧ୍ୟାପକଂକ ଶ୍ରମ ଓ ସାଧନା ବଳରେ ସେ ସମୟରେ ବିଶ୍ୱଭାରତୀର ସୁନାମ ବଢ଼ିଥିଲା-ସେମାନଂକ ମଧ୍ୟରେ ଥିଲେ

ଗଗନେନ୍ଦ୍ର ନାଥ ଦାଶ ଓ ଡ଼ଃ ବନମାଳୀ ରଥ । ଗଗନ ବହୁପାଠୀ ଓ ବୈଦ୍ଧିକ ସ୍ତରରେ ଉଚ୍ଚ ସୋପାନକୁ ଉଠିବା ପାଇଁ କଠୋର ପରିଶ୍ରମ କରୁଥିଲେ । ସକାଳ ଆଠଟାରେ ବିଭାଗକୁ ଆସି ଦି'ପହରେ ସାମାନ୍ୟ ଜଳଯୋଗ କରି ସଂଧ୍ୟା ପାଞ୍ଚଟାରେ ଘରକୁ ଫେରୁଥିଲେ । ଜର୍ମାନ ବିଶ୍ୱବିଦ୍ୟାଳୟ ପ୍ରୋଜେକ୍ଟରେ ତାଙ୍କର କାର୍ଯ୍ୟ ଉଚ୍ଚ ପ୍ରଶଂସିତ ହୋଇଥିଲା । ଛାତ୍ରମାନଂକୁ ବିହିତ ନମ୍ବର ଦେଉଥିଲେ । ଛାତ୍ରଂକ ଅଭିଯୋଗ ମୁଁ ଶୁଣି ଶୁଣୁ ନ ଥିଲି । ଏଠି ସଳ୍ପକାଳ ରହଣୀ ଭିତରେ ଡ଼ଃ ରଥ ବିଭାଗର ହିସାବ ରକ୍ଷକ ଓ ଭ୍ରମଣ ବଣଭୋଜି ଆଦରି ସଂଗଠକ ଥିଲେ ।ବହୁପରିଶ୍ରମ କରି ସେ ଅତି ମନୋଜ୍ଞ ଭାଷାରେ ଓଡ଼ିଆରେ ସଂସ୍କୃତ ଅଳଂକାର ଗ୍ରନ୍ଥ ଲେଖିଥିଲେ ।

ସାମୟିକ ଭାବରେ ଯେଉଁମାନେ ଅଧ୍ୟାପକ ହୋଇ ଆସିଥିଲେ, ସେମାନଂକ ତ୍ୟାଗ ଓ ସେବାରେହିଁ ବିଭାଗ ସମୃଦ୍ଧ ହୋଇଅଛି । କେହି ସ୍ଥାୟୀ ଅଧ୍ୟାପକ ଦୀର୍ଘଦିନ ପାଇଁ ଛୁଟିରେ ଗଲେ, କୌଣସି ପଦ ଖାଲି ରହିଲେ ତାଙ୍କ ସ୍ଥାନରେ ୩ ମାସ ବା ୬ ମାସ ପାଇଁ ନିଯୁକ୍ତି ଦିଆଯାଉଥିଲା । ଫଳରେ ଅଧିକ ଅଧ୍ୟାପକ ପଦ ସୃଷ୍ଟି ପାଇଁ ଦାବି କରି ହେଉଥିଲା । ଏହାର ବ୍ୟତିକ୍ରମ ଦୁଇଥର ଘଟିଥିଲା -ଥରେ ଶ୍ରୀନିବାସ ବାବୁ ଓ ଥରେ ମୁଁ ଶେଷ ଦୁଇ ବର୍ଷ ବିଭାଗ-ମୁଖ୍ୟ ବିଭାଗ ହେବା-ବେଳେ । ଏଥିପାଇଁ ମୁଁ ବଡ଼ ବ୍ୟଥିତ ହୋଇଲି । ବିଭାଗକୁ ମଧ୍ୟ ମୂଲ୍ୟଦେବାକୁ ହୋଇଛି । ସ୍ଥାୟୀ ଅଧ୍ୟାପକ ସ୍ଥାନ ଅନ୍ୟ ବିଭାଗକୁ ସ୍ଥାନାନ୍ତରିତ ହୋଇଛି ଓ ନୂତନ ପଦ ସୃଷ୍ଟି ସମ୍ଭବ ହୋଇ-ନାହିଁ । ଆଜିକାଲି ଉନ୍ନତ ସାହିତ୍ୟ ବିଭାଗର ବହୁ ବିଶେଷ ପତ୍ର ଅଧ୍ୟୟନର ସୁଯୋଗ ଛାତ୍ର-ମାନଂକୁ ଦିଆଯାଉଛି । ଏଥିଲାଗି ଅନ୍ତତଃ ଦଶଜଣ ଅଧ୍ୟାପକ ଗୋଟିଏ ସ୍ନାତକୋତ୍ତର ବିଭାଗରେ ରହିବା ବାଞ୍ଛନୀୟ । କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଆୟୋଗଂକ ଏହି ନୀତି ଅନୁସାରେ ଓଡ଼ିଆ ବିଭାଗର ସର୍ବନିମ୍ନ ସଂଖ୍ୟକ ଅଧ୍ୟାପକ ନାହାନ୍ତି । ଅଧ୍ୟାପନା ଓ ଗବେଷଣା ଆୟାସ ଖଣ୍ଡିତ ହେଉଛି ।

ବିଶ୍ୱଭାରତୀରେ ଦୀର୍ଘଦିନ ରହଣୀ ମୋ ଜୀବନରେ ପରମ ସୌଭାଗ୍ୟ । ମାତ୍ର ଏଠି ରହି ଯାହା କରିପାରିଛି ସେଥିରେ ମୁଁ ଆଦୌ ଆତ୍ମସନ୍ତୋଷ ଲାଭ କରିପାରିନାହିଁ । ପ୍ରଥମତଃ ମୋର ଗବେଷଣା ନିବନ୍ଧଟି ମୂଳରେ ଯେଉଁ ପରିକଳ୍ପନା ଥିଲା-ତାହା ଏବେ ବି ଅପୂର୍ଣ୍ଣ । ସେ କାଳରେ ଗବେଷଣା ଅଧ୍ୟାପକମାନେ ସାମୟିକ ଅବସରରେ କରୁଥିଲେ । ମାତ୍ର ଏକକ ଭାବରେ ମୁଁ କେବଳ ଗବେଷଣା କାର୍ଯ୍ୟ କରିଥିଲି । ସେଥିପାଇଁ ମୋ ଗବେଷଣା ପୁସ୍ତକରେ ହୁଏତ କିଛି ବିଶେଷଣତା ରକ୍ଷା କରିବା ସମ୍ଭବ ହୋଇଥିଲା । 'ଆଧୁନିକ ଓଡ଼ିଆ କାବ୍ୟଧାରା :ଅଦିଯୁଗ' ପୁସ୍ତକ ପାଠକରି କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗଳା ପ୍ରଫେସର ବିଜନ ବିହାରୀ ଭଟ୍ଟାଚାର୍ଯ୍ୟ ଲେଖିଥିଲେ-
"Adhunik Odia Kabyadhara" was sent to me by the Director of press and publicity Visva-Bharati, some time ago. I am going through the book with keen interest and great pleasure....The first five chapters give an excellent background both social and Political to the history of the modern Oriya poetry. You have a mass of materials at your disposal and I must congratulate you on the manner in which you

have utilized the same.

I have no doubt that your book will have the recognition which it highly deserves and will be considered as a distinct contribution to the history of the Oriya literature in particular and the Indian literature in general. Thanking you again.

Yours sincerely.
Bijanbihari Bhattacharya.
Calcutta
24. 8. 65.

କବି ସଚ୍ଚି ରାଉତ ରାୟଂକ ସଂପାଦିତ 'ଦିଗନ୍ତ' ପତ୍ରିକାରେ ବହିଟିକୁ 'ସୁବିନ୍ୟସ୍ତ ଭାଷାର ଉପାଦାନରେ ଗଠିତ ବିଷାଦ ବିଧୁର, ଆନନ୍ଦ ଉଜ୍ଜ୍ୱଳ, ଆହରଣପୁଷ୍ଟ, ଆବେଦନରେ ଚିରନ୍ତନ, ଆକର୍ଷଣରେ ନତ୍ୟନୂତନ ଆଧୁନିକ ଉତ୍କଳର କାବ୍ୟ ଆତ୍ମାର ଜୀବନ୍ତ ବିଗ୍ରହ ' ରୂପେ ବର୍ଣ୍ଣନା କରାଯାଇଛି । ନିର୍ଦ୍ଦେଶକ କୁଂଜବିହାରୀ ଦାଶ ଲେଖିଛନ୍ତି - ''ଏହାର ଉପାଦାନ ମୌଳିକ ବା ପ୍ରତ୍ୟକ୍ଷ ନୁହେଁ, ଅପ୍ରତ୍ୟକ୍ଷ, ପରପ୍ରସାଦ ଗୃହୀତ' । ଆଲୋଚକର ଏଇ ସ୍ୱୀକୃତି ଅନୁସନ୍ଧାନକାରୀର ସାହସିକତା ଓ ଉଦାର ଦୃଷ୍ଟିକୋଣରେ ପ୍ରତୀକ । ହେଲେ ହେଁ 'ଆଧୁନିକ ଓଡ଼ିଆ କାବ୍ୟଧାରା' ବହୁ ପ୍ରବନ୍ଧର ଏକ ସୂଚିପତ୍ର ନୁହେଁ, ଏହା ବହୁଧାରାରେ ଆତ୍ମଧାରା ଏକ ବିପୁଳ ଯୋଗ ।XX ତଥ୍ୟ ଆହରଣ ସଂଗେ ସଂଗେ ପରିବେଷଣର ସେ ଅଧିକ କୌଶଳ ପ୍ରଦର୍ଶନ କରିଅଛନ୍ତି ।XX ଆମୂଳାନ୍ତ ଭାଷାର ସ୍ତର ଓ ଆଲୋଚନାର ଭାରସାମ୍ୟ ସୁରକ୍ଷିତ । ମନନର ମୁଦ୍ରା ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ ଅଂକିତ ।''

ମୋର ଦୁଃଖ ମୁଁ ଅଧ୍ୟାପକ ଥିବା ସମୟରେ ମୋର ସମସ୍ତ ଓଡ଼ିଆ, ଇଂରାଜୀ ରଚନାର ସୁଂକଳିତ ସଂଗ୍ରହ ଗ୍ରନ୍ଥାକାରରେ ପ୍ରକାଶ କରିପାରିନାହିଁ । ମୁଁ ସାମାନ୍ୟ ମନୋଯୋଗୀ ହୋଇଥିଲେ ମୋର ସର୍ଜନାତ୍ମକ ତଥା ରଚନାତ୍ମକ ଲେଖା ସବୁ ବିଶିଷ୍ଟ ଓଡ଼ିଆ ପ୍ରକାଶକମାନଂକ ଦ୍ୱାରା ପ୍ରକାଶ କରାଇ ପାରିଥାନ୍ତି । ଏବେ ଓଡ଼ିଆ ରଚନା ସବୁ ପତ୍ରପତ୍ରିକା ପୃଷ୍ଠାରେ ବିକ୍ଷିପ୍ତ ହୋଇପଡ଼ିଛି । କବିତା, ଗଳ୍ପ ଓ ଭ୍ରମଣାଲେଖ୍ୟ ବିଭିନ୍ନ ସମୟରେ ପତ୍ରିକା ଓ ସଞ୍ଚୟନରେ ସ୍ଥାନିତ ହୋଇଥିବାରୁ । ମୋର ଲେଖକୀୟ ସ୍ଥିତି ବୃହତ୍ତର ପାଠକସମାଜରେ ଅପରିଚିତ ହୋଇରହିଛି । ଆଧୁନିକ ସାହିତ୍ୟର ଗବେଷଣା ପାଇଁ ବହୁ ବିଶିଷ୍ଟ ଲୋକଂକର ଚିଠିପତ୍ର, ଦିନଲିପି, ପାଣ୍ଡୁଲିପି ଆଦି ମୌଳିକ ଉପାଦାନର ଯଥାର୍ଥ ବିନିଯୋଗ କରାଯାଇ ପାରିନାହିଁ । ଏଇ ଦୃଷ୍ଟିରୁ ସାଂସ୍କୃତିକ ଜଗତକୁ ଦାନ ମୁଁ ଦେଇପାରିନାହିଁ ।

ପ୍ରବାସରେ ଏକ ବିଶ୍ୱବିଦ୍ୟାୟତନର କ୍ଷୁଦ୍ର ଗଣ୍ଡି ମଧ୍ୟରେ ନିଜକୁ ବନ୍ଦୀ କରି ରଖିଥିବାରୁ ଲୋକ ଚରିତ୍ର ଅଧ୍ୟୟନ ଓ ବୃହତ୍ତର ସମାଜରେ ନିଜକୁ ଖାପଖୁଆଇ ଚଳିବାର ଯୋଗ୍ୟତା ମୁଁ ହରାଇ ବସିଥିବାରୁ ମୋର ପରିବାର ଅନିଶ୍ଚୟତା ମଧ୍ୟରେ ଦିଶାହରା ହୋଇ ପଡ଼ିଛନ୍ତି । ସାଧାରଣ

ସଂସାରୀ ଦୃଷ୍ଟିରେ ମୁଁ ଏକାନ୍ତ ନିର୍ବୋଧ ଓ ଅପଟୁ ବିବେଚିତ ହୋଇଛି ।

ମୋର ପରମ ସୁଖ ବିଶ୍ୱଭାରତୀରେ ମୋର କର୍ମଜୀବନରେ ମୁଁ ସଂପଦ ବିପଦ, ଲାଭ କ୍ଷତି, ନିନ୍ଦା ଓ ଅପମାନକୁ ଭୃକ୍ଷେପ ନ କରି ଯଥାସମ୍ଭବ ଅନାସକ୍ତ ଓ ନିର୍ଲିପ୍ତ ଭାବରେ ମୋର କର୍ତ୍ତବ୍ୟ ସାଧନ ପାଇଁ ପ୍ରୟାସ କରିଛି । ବ୍ୟକ୍ତିବିଶେଷ ପାଇଁ ଅନୁଷ୍ଠାନର ଆଦର୍ଶ କ୍ଷୁଣ୍ଣ କରିନାହିଁ । ମୋର ଜଣେ ଅତ୍ୟନ୍ତ ଘନିଷ୍ଠ ବନ୍ଧୁ ମୋତେ ଥରେ ପରାମର୍ଶ ଦେଇ ଲେଖିଥିଲେ 'କାହାର ଉପକାର କରିବାକୁ ଯଦି Out of the way କିଛି କରିବାକୁ ପଡ଼େ ତାହା ଦୋଷ ନୁହେଁ ।' ରୂଢ଼ ଭାବରେ ତାଂକ ପରାମର୍ଶ ନ ମାନି ଲେଖିଥିଲି - 'ଯେଉଁଠି ନୀତି ଓ କର୍ତ୍ତବ୍ୟର ପ୍ରଶ୍ନ-ସେଠି ମମତାର ସ୍ଥାନ ଗୌଣ ; ସବା ଉପରେ ନିର୍ଲିପ୍ତତାର ସ୍ଥାନ ।' ତରୁଣ ଓ ନବୀନଙ୍କ ହାତରେ ଭବିଷ୍ୟତରେ ସ୍ୱର୍ଣ୍ଣକୁମ୍ଭ ମୋର ସ୍ମୃତି ଓ ପ୍ରତୀତି ସେଥିରେ ଯଦି କଣାଟିଏ ସଂପଦ ଭରିଦେଇପାରେ ଓ ଅର୍ଦ୍ଧଶତ ବର୍ଷ ପରେ ବି ଆମର ପ୍ରତିଷ୍ଠାନ ପୂର୍ଣ୍ଣତାର ନିକଟବର୍ତ୍ତୀ ହୁଏ, ତାହା ହିଁ ହେବ ପରମ ସାର୍ଥକତା । ମୋର ଗୁଣମୁଗ୍ଧ ବିଶ୍ୱଭାରତୀ ଓଡ଼ିଆ ବିଭାଗର ଅଧ୍ୟାପକ, ଗବେଷକ ଓ ଛାତ୍ରଛାତ୍ରୀବୃନ୍ଦ ଷଷ୍ଟିପୂର୍ତ୍ତି ଅଭିନନ୍ଦନ ପତ୍ରରେ ଲେଖିଛନ୍ତି - ''ବିଶ୍ୱଭାରତୀ ଓଡ଼ିଆ ବିଭାଗର ଦୀର୍ଘ ଇତିହାସ ସହିତ ଆପଣଂକର ଜୀବନବ୍ୟାପୀ ନିରବଚ୍ଛିନ୍ନ ସାରସ୍ୱତ ସାଧନା, ଅଧ୍ୟୟନ ଓ ଅଧ୍ୟାପନାଗତ ଗଭୀର ନିଷ୍ଠା, ପ୍ରଶାସନଗତ ଦୂରଦୃଷ୍ଟି ଜଡ଼ିତ । ଏହି ବିଭାଗର ବୈଷୟିକ ଓ ଜ୍ଞାନ ଚର୍ଚ୍ଚାଗତ ବିକାଶରେ ଆପଣଂକର ଦାନ ଅବିସ୍ମରଣୀୟ । ସୃଷ୍ଟି ଓ ସମୀକ୍ଷାର ଦ୍ୱୈତ ଧାରାରେ ଆପଣଂକ ପ୍ରତିଭା ଋଦ୍ଧିମନ୍ତ ବ୍ୟକ୍ତିଗତ ଜୀବନରେ ସହସ୍ର ଝଡ଼-ଝଞ୍ଜା ଅତିକ୍ରମ କରି ଆପଣ ଅମ୍ଳାନ ପୁଷ୍ପ ପରି ବିକଶିତ । ନବଯୁଗର ଜଣେ ସୂକ୍ଷ୍ମଦର୍ଶୀ ସୃଜନଶୀଳ ସମାଲୋଚକ ଓ ଭାଷାଶିଳ୍ପୀଭାବେ ଓଡ଼ିଆ ସାହିତ୍ୟରେ ଆପଣଂକର ଅନନ୍ୟ ପ୍ରତିଷ୍ଠା ସୁବିଦିତ ।

ଆପଣଂକର ଅମାୟିକ ବ୍ୟକ୍ତିତ୍ୱ, ଛାତ୍ର ଓ ସହକର୍ମୀ ବତ୍ସଳତା, ଅଦମ୍ୟ କର୍ମପ୍ରେରଣା, ଗଣତାନ୍ତ୍ରିକ ମନୋଭାବ, ନିଷ୍ପକ୍ଷ ବିଚାର-ଦୃଷ୍ଟି, ଉନ୍ନତ ମାନସିକତା, ପ୍ରସନ୍ନ ଉଦାରତା ଏକ ସର୍ବକାଳୀନ ଆଦର୍ଶ ପ୍ରତିଷ୍ଠା କରିଛି ।'' ଏହା କଣ ସତ୍ୟ, ନା ମୁହୂର୍ତ୍ତର ଭାବପ୍ରବଣତା ! ଏଥିରୁ ଯଦି ତିଳାର୍ଦ୍ଧ ସତ୍ୟ ବୋଲି ଭବିଷ୍ୟତ ବିଚାର କରେ, ତାହା ହିଁ ହେବ ମୋ ପଥଚଲାର ଓ ପଥଶେଷର ଅମୃତପଥର ଅମୂଲ୍ୟ ପାଥେୟ ।



# ଶାନ୍ତିନିକେତନର ଓଡ଼ିଆ ବିଭାଗ

## ଦେବେନ୍ଦ୍ର ନାଥ ପ୍ରଧାନ

ବିଶ୍ୱଭାରତୀ ଏକ ବିଶ୍ୱବିଦ୍ୟାଳୟ ରୂପେ ସ୍ୱୀକୃତି ପାଇବା ପୂର୍ବରୁ ଶିକ୍ଷା-ଭବନ ପାଠ୍ୟକ୍ରମରେ ମାତୃଭାଷା ଅଧ୍ୟୟନ ବାଧ୍ୟତାମୂଳକ ଥିଲା । ବଙ୍ଗଳା ଓ ହିନ୍ଦୀ ମାତୃଭାଷା କ୍ଷେତ୍ରରେ ଆନୁଷ୍ଠାନିକ ଭାବେ ଶିକ୍ଷାଦାନର ବ୍ୟବସ୍ଥା ଥିଲେହେଁ ଓଡ଼ିଆ ମାତୃଭାଷା ନିମିତ୍ତ ସେପରି ସୁଯୋଗ ନଥିଲା । ଫଳତଃ ଓଡ଼ିଆ ଅଧ୍ୟୟନ ନିମନ୍ତେ ଛାତ୍ରଛାତ୍ରୀମାନେ ଅସୁବିଧାର ସମ୍ମୁଖୀନ ହେଉଥିଲେ ।

୧୯୪୮ ମସିହାର କଥା । ସେଥର ଗୌରୀପ୍ରାଙ୍ଗଣରେ 'ଚୀନା ଭବନ'ର ବାର୍ଷିକୋତ୍ସବ ପାଳିତ ହେଉଥାଏ । ଉତ୍ସବ ଉଦ୍ଦେଶ୍ୟରେ ଏକ ସାଧାରଣ ସଭାର ଆୟୋଜନ ହୋଇଥାଏ । ସଭାପତି ଥାନ୍ତି ମାନନୀୟ ପ୍ରଫେସର ତାନ୍-ୟୁନ୍-ସାନ୍ ଏବଂ ମୁଖ୍ୟ ଅତିଥି ତତ୍କାଳୀନ ଓଡ଼ିଶାର ମନ୍ତ୍ରୀ ପୂଜ୍ୟ ନିତ୍ୟାନନ୍ଦ କାନୁନ୍‌ଗୋ । ମୁଖ୍ୟ ଅତିଥି ମହୋଦୟ ସ୍ୱ ଭାଷଣରେ ପ୍ରାଚୀନ ଉତ୍କଳ ଓ ଚୀନର ନିବିଡ ସଂପର୍କ ଉପରେ ଆଲୋକପାତ କରିଥିଲେ । ପ୍ରସଙ୍ଗକ୍ରମେ ସଭାପତି ପ୍ରଫେସର ତାନ ଶାନ୍ତିନିକେତନର ଚୀନାଭବନ ଅନୁରୂପ ଓଡ଼ିଶାରେ ଏକ ଭବନ ପ୍ରତିଷ୍ଠା ନିମିତ୍ତ ପ୍ରସ୍ତାବ ଦେଇଥିଲେ । ତାଙ୍କ ମତ ଥିଲା- ଏଭଳି ଏକ ଭବନ ସମ୍ଭବ ହେଲେ ବୌଦ୍ଧଧର୍ମ ସମ୍ବନ୍ଧରେ ଚର୍ଚ୍ଚା ଓ ଗବେଷଣା ହେବା ସହ ଚୀନ ଓ ଉତ୍କଳର ସମ୍ପର୍କ ଆହୁରି ଘନିଷ୍ଠ ହୋଇପାରିବ ।

ସଭା ସାଙ୍ଗ ହେବାପରେ ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ତଥା ବିଶ୍ୱଭାରତୀର କେତେକ କର୍ମକର୍ତ୍ତା ମାନନୀୟ କାନୁନ୍‌ଗୋଙ୍କ ସହ ସାକ୍ଷାତ କରି ଓଡ଼ିଆ ଭାଷା ଓ ସାହିତ୍ୟର ବୃହତ୍ତର ସ୍ୱାର୍ଥଦୃଷ୍ଟିରୁ ଶାନ୍ତିନିକେତନରେ ଏକ ଓଡ଼ିଆ ବିଭାଗ ସ୍ଥାପନ ନିମିତ୍ତ ପ୍ରସ୍ତାବ ଦେଲେ । ପ୍ରସ୍ତାବଟି ଯୁକ୍ତିଯୁକ୍ତ ହୋଇଥିବାରୁ ମନ୍ତ୍ରୀ ମହୋଦୟ ଏଥିରେ ସମ୍ମତ ହେଲେ ଏବଂ ଓଡ଼ିଶାକୁ ଫେରି ଯଥାଶୀଘ୍ର ଏ ଦିଗରେ ପଦକ୍ଷେପ ନେବେ ବୋଲି ପ୍ରତିଶ୍ରୁତି ଦେଲେ । ଉକ୍ତ ଆଲୋଚନା ପରେ ବିଶ୍ୱଭାରତୀ ଏବଂ ଓଡ଼ିଶା ସରକାରଙ୍କ ମଧ୍ୟରେ ପତ୍ରାଳାପ ହେଲା । ଫଳତଃ ୧୯୪୮ ମସିହାରେ ବିଶ୍ୱଭାରତୀରେ ଓଡ଼ିଆ ବିଭାଗର ଶୁଭାରମ୍ଭ ହେଲା ।*

ଜଣୈକ ଅଧ୍ୟାପକ, ଗବେଷକ ନିଯୁକ୍ତି, ପୁସ୍ତକାଦି ଖରିଦ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ବାବଦକୁ ଓଡ଼ିଶା ସରକାର ଆର୍ଥିକ ମଞ୍ଜୁରୀ ଦେଲେ । ଆର୍ଥିକ ମଞ୍ଜୁରୀ ଫଳରେ ଅଧ୍ୟାପକ ରୂପେ ନିଯୁକ୍ତି ପାଇଲେ ଗବେଷକ ପ୍ରହ୍ଲାଦ ପ୍ରଧାନ ଏବଂ ଗବେଷକ ପଦବୀରେ ରହିଲେ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ । ପ୍ରାକ୍ କୁଟୀର ସଂଲଗ୍ନ ଲାଇବ୍ରେରୀର ଉପର ମହଲା ସ୍ଥିତ ବିଦ୍ୟାଭବନର ଏକ ଓଡ଼ିଆ ବିଭାଗ କାର୍ଯ୍ୟ କଲା । ଏକ କୋଠରୀରେ ବସୁଥିଲେ ଅଧ୍ୟାପକ, ଗବେଷକ ଓ ଜଣୈକ ପିଅନ୍ । ସେତେବେଳେ ବିଶ୍ୱଭାରତୀ ଆଇ.ଏ. ଓଡ଼ିଆ ପାଠ୍ୟକ୍ରମରେ ମାତ୍ର ଜଣେ ଛାତ୍ର ଅଧ୍ୟୟନ

କରୁଥିଲେ । ଶିକ୍ଷାଦାନ କରୁଥିଲେ ଅଧ୍ୟାପକ ଏବଂ ଗବେଷକ ମହୋଦୟ ତତ୍କାଳୀନ ବିଦ୍ୟାଭବନ ବାରଣ୍ଡାରେ । ଆଇ .ଏ. ପରେ ବି.ଏ.ରେ ଓଡ଼ିଆ ଅଧ୍ୟୟନ ବ୍ୟବସ୍ଥା ହେଲା । ଓଡ଼ିଆ ଏମ୍.ଏ. ପାଇଁ ପ୍ରଥମେ ସେପରି ସୁବିଧା ନ ଥିଲା ।

ଶିକ୍ଷାଦାନ ବ୍ୟତୀତ ଓଡ଼ିଆ ବିଭାଗରେ ଗବେଷଣା ମଧ୍ୟ ଚାଲିଥାଏ । ଅଧ୍ୟାପକ ପ୍ରଧାନ ତଥା ଚିତ୍ତଭାଇ ଗବେଷଣାରେ ବ୍ୟସ୍ତ ଥାନ୍ତି । ଅଧ୍ୟାପକ ପ୍ରଧାନ ପ୍ରାକୃତକ ଓଡ଼ିଆ ଭାଷାର ତୁଳନାତ୍ମକ ଅଧ୍ୟୟନରେ ରତ ଥାନ୍ତି । ଓଡ଼ିଆ ଭାଷା, ସାହିତ୍ୟକୁ ସର୍ବଭାରତୀୟ ସ୍ତରରେ ପରିଚିତ କରିବା ଉଦ୍ଦେଶ୍ୟରେ ବିଶ୍ୱଭାରତୀ ଦ୍ୱାରା ପ୍ରକାଶିତ ହିନ୍ଦୀ ପତ୍ରିକାରେ ତାଙ୍କର କେତୋଟି ରଚନା ପ୍ରକାଶ ପାଇଲା । ୧୯୪୯ ମସିହାରେ ଚୀନ ସରକାରଙ୍କଠାରୁ ନିଯୁକ୍ତି ପାଇ ଅଧ୍ୟାପକ ପ୍ରଧାନ ନାନ୍‌କିଂ ବିଶ୍ୱବିଦ୍ୟାଳୟରେ ହିନ୍ଦୀ ଅଧ୍ୟାପକ ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ତାଙ୍କ ବିଦେଶଯାତ୍ରା ଫଳରେ ଅଧ୍ୟାପକ ପଦବୀ ଶୂନ୍ୟ ରହିଲା ଏବଂ ଗବେଷକ ଭାବରେ ରହିଲେ କେବଳ ଚିତ୍ତଭାଇ । ତାଙ୍କ ଅଶେଷ ପରିଶ୍ରମ, ତ୍ୟାଗ ଓ ନିଷ୍ଠା ଫଳରେ ବିଶ୍ୱଭାରତୀ ତରଫରୁ ଗବେଷଣା-ମୂଳକ କେତୋଟି ଓଡ଼ିଆ ପୁସ୍ତକ ପ୍ରଥମେ ପ୍ରକାଶିତ ହେଲା । ପରେ ଚିତ୍ତଭାଇ ଡେନ୍‌ମାର୍କ ଚାଲିଯିବାରୁ ଗବେଷକ ପଦବୀ ମଧ୍ୟ କିଛି ସମୟ ପାଇଁ ଶୂନ୍ୟ ରହିଲା ।

ଓଡ଼ିଆ ବିଭାଗର ଶୁଭାରମ୍ଭ ସମୟରେ ବିଶ୍ୱଭାରତୀର ବିଭିନ୍ନ ଭବନରେ ମାତ୍ର କେତେଜଣ ଓଡ଼ିଆ ଛାତ୍ରଛାତ୍ରୀ ଅଧ୍ୟୟନ କରୁଥିଲେ । ସମସ୍ତ ଛାତ୍ର ଛାତ୍ରୀ ଏକ ପାରିବାରିକ ବନ୍ଧନରେ ଆବଦ୍ଧ ହୋଇ ରହିଥିଲେ । ଅଧ୍ୟାପକ, ଗବେଷକ ତଥା ଛାତ୍ରଛାତ୍ରୀଙ୍କୁ ନେଇ ବିଭିନ୍ନ ସମୟରେ ପର୍ବପର୍ବାଣି ସବୁ ପାଳିତ ହେଉଥିଲା ।

ବିଶ୍ୱଭାରତୀ ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ରୂପେ ସ୍ୱୀକୃତି ପାଇବା ପରେ ଓଡ଼ିଆ ବିଭାଗର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହେଲା । ନୂତନ ଅଧ୍ୟାପକ, ଗବେଷକ ନିଯୁକ୍ତ ପାଇଲେ । ଓଡ଼ିଆ ଏମ.ଏ. ପାଠ୍ୟକ୍ରମ ପ୍ରବର୍ତ୍ତିତ ହେଲା । ଓଡ଼ିଶାର ଛାତ୍ରଛାତ୍ରୀମାନେ ଓଡ଼ିଆରେ ଏମ.ଏ. ଅଧ୍ୟୟନ କରିବାର ସୁଯୋଗ ପାଇଲେ । ଅଧ୍ୟାପକ, ଗବେଷକ ତଥା ଛାତ୍ରଛାତ୍ରୀଙ୍କ ତ୍ୟାଗ ଓ ନିଷ୍ଠା ଫଳରେ ଗବେଷଣାତ୍ମକ ପୁସ୍ତକରାଜି ତଥା ରଚନାସବୁ ପ୍ରକାଶିତ ହେଲା । ଓଡ଼ିଆ ବିଭାଗ ସର୍ବଭାରତୀୟ ସ୍ତରରେ ଆପଣାର ଏକ ସ୍ଥାନ କରିନେଲା । ଓଡ଼ିଆ ଭାଷା, ସାହିତ୍ୟ ସମୃଦ୍ଧ ହେଲା ।



* ଏହି ସଂଖ୍ୟାରେ ପ୍ରକାଶିତ ସ୍ୱର୍ଗୀୟ ପ୍ରହ୍ଲାଦ ପ୍ରଧାନଙ୍କର ଡଃ ମାନସିଂହଙ୍କୁ ଲିଖିତ ପତ୍ର ଓ 'ବିଶ୍ୱଭାରତୀ ନ୍ୟୁଜ'ର ସମ୍ବାଦ ଅନୁଯାୟୀ ୧୯୪୭ ମସିହାରେ ଓଡ଼ିଆ ବିଭାଗ ପ୍ରତିଷ୍ଠିତ ହୋଇଥିଲା ।

# ଶାନ୍ତିନିକେତନ ଓ ଓଡ଼ିଶା

## ପ୍ରଫେସର ଗଗନେନ୍ଦ୍ର ନାଥ ଦାଶ

ଶାନ୍ତିନିକେତନ ସହ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ବୌଦ୍ଧିକ ଓ ସାଂସ୍କୃତିକ ସମ୍ପର୍କ ରହିଆସିଛି । ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ, ଯଥା ରାଜନୀତି ଓ ସାହିତ୍ୟ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ବ୍ୟକ୍ତିବିଶେଷ ଶାନ୍ତିନିକେତନର ନିବଡ଼ ସମ୍ପର୍କରେ ଆସିଛନ୍ତି, ସମୟ ବିଶେଷରେ ସେଠାରୁ ପ୍ରେରଣା ମଧ୍ୟ ସଂଗ୍ରହ କରିଛନ୍ତି । ସେ ସମ୍ପର୍କରେ ବିସ୍ତାରିତ ଆଲୋଚନାର ଅବକାଶ ଏଠାରେ ନାହିଁ । ତେବେ ନିମ୍ନରେ ସେ ବିଷୟରେ ମାତ୍ର କେତୋଟି ସୂଚନା ଦିଆଯିବ ।

ଭକ୍ତକବି ମଧୁସୂଦନ ୧୯୧୧ ମାର୍ଚ୍ଚ ମାସରେ ଶାନ୍ତିନିକେତନ ପରିଦର୍ଶନ ପ୍ରସଙ୍ଗରେ ଗୁରୁଦେବ ରବୀନ୍ଦ୍ରନାଥଙ୍କ ଆତିଥ୍ୟ ଗ୍ରହଣ କରିଥିଲେ ଓ ତାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇଥିଲେ ବୋଲି ମଧୁସୂଦନଙ୍କ ଦିନଲିପିରୁ ଜଣାଯାଏ ।

ଏହାପରେ ୧୯୧୫ ରେ ଜଣେ ଓଡିଆ ଛାତ୍ର ଗୋବିନ୍ଦଚନ୍ଦ୍ର ମିଶ୍ର ଶାନ୍ତିନିକେତନରେ ପହଞ୍ଚିଥିଲେ । ଦଶପଲ୍ଲା ପ୍ରଜା-ମେଳିର ଦମନ ପ୍ରସଙ୍ଗରେ ପ୍ରଶାସନ ଓ ପୁଲିସ କବଳରୁ ଅତ୍ୟାଚାରିତ ଦଶପଲାର ପ୍ରଜାବୃନ୍ଦଙ୍କୁ ରକ୍ଷା କରିବା ତଥା ନିଜ ଆତ୍ମରକ୍ଷା କରିବା ଉଦ୍ଦେଶ୍ୟ ନେଇ ସେ ଦକ୍ଷିଣ ଆଫ୍ରିକରୁ ସଦ୍ୟ-ପ୍ରତ୍ୟାଗତ ମିଷ୍ଟର ଗାନ୍ଧୀ (ପରବର୍ତ୍ତୀ କାଳର ମହାତ୍ମା ଗାନ୍ଧୀ) ଙ୍କ ସହାୟତା ଲୋଡ଼ି ସେଠାକୁ ଯାଇଥିଲେ । ସେ ଅବଶ୍ୟ ସେଠାରେ ମିଷ୍ଟର ଗାନ୍ଧୀଙ୍କୁ ଭେଟିବାର ସୁଯୋଗ ପାଇନଥିଲେ, କାରଣ ସେ ସେଠାରେ ପହଞ୍ଚିବାର ଅବ୍ୟବହିତ ପୂର୍ବରୁ ମିଷ୍ଟର ଗାନ୍ଧୀ ଶାନ୍ତିନିକେତନ ଛାଡ଼ିସାରିଥିଲେ । କିନ୍ତୁ ଗୋବିନ୍ଦଚନ୍ଦ୍ର ମିଶ୍ର ସେଠାରେ କିଛିକାଳ ରହି ଗୁରୁଦେବ ରବୀନ୍ଦ୍ରନାଥ ଓ ସି.ଏଫ୍. ଆଣ୍ଡ୍ରୁଜ୍‌ଙ୍କ ସହାୟତାରେ ଦଶପଲ୍ଲା ମେଳି ଦମନରେ ପ୍ରଶାସନ ତଥା ପୁଲିସ ଅତ୍ୟାଚାରରୁ ପ୍ରଜାମାନଙ୍କୁ ରକ୍ଷା କରିବାର ଉଦ୍ୟମ କରିଥିଲେ । ତାଙ୍କର ସେ ଉଦ୍ୟମ ଅବଶ୍ୟ ସଫଳ ହୋଇପାରିନଥିଲା । ପରେ ସେ ବ୍ରହ୍ମଚର୍ଯ୍ୟାଶ୍ରମରେ ଠିକ୍ ଛାତ୍ର ହୋଇନଥିଲେ ମଧ୍ୟ ଶାନ୍ତିନିକେତନର ଅନ୍ତେବାସୀ ଭାବରେ କିଛିକାଳ ସେଠାରେ ଅବସ୍ଥାନ କରିଥିଲେ, ଅସୁସ୍ଥ ହୋଇପଡ଼ିଥିବା ଆଣ୍ଡ୍ରୁଜଙ୍କ ସେବା-ସୁଶ୍ରୂଷା କରିଥିଲେ ଓ ସେଠାରେ ଛାତ୍ରମାନଙ୍କ ସହ ମିଶି କଲିକତା ବିଶ୍ୱବିଦ୍ୟାଳୟର ମାଟ୍ରିକ୍ୟୁଲେସନ ପରୀକ୍ଷା ପାଇଁ ପ୍ରସ୍ତୁତି କରିଥିଲେ ଓ ପରୀକ୍ଷା ମଧ୍ୟ ଦେଇଥିଲେ । ଏ ଦୃଷ୍ଟିରୁ ସେ ବୋଧହୁଏ ଶାନ୍ତିନିକେତନର ପ୍ରଥମ ଓଡ଼ିଆ ଅନ୍ତେବାସୀ । ଆଜି ଅବଶ୍ୟ ଓଡ଼ିଶାର ବୁଦ୍ଧିଜୀବୀ ଓ ଶିକ୍ଷାବିତ୍‌ମହଲରେ ତଥା ରାଜନୀତି-କ୍ଷେତ୍ରରେ ଏ ଗୋବିନ୍ଦଚନ୍ଦ୍ର ମିଶ୍ର ପ୍ରାୟ ସମ୍ପୂର୍ଣ୍ଣ ଭାବରେ ଅଜ୍ଞାତ ବା ବିସ୍ମୃତ ; କିନ୍ତୁ ପରେ ସେ ସାବରମତୀ ଆଶ୍ରମର ପ୍ରଥମ ଓଡ଼ିଆ ଅନ୍ତେବାସୀ ଭାବରେ ମହାତ୍ମା ଗାନ୍ଧୀଙ୍କ ଅତି ନିକଟ ସମ୍ପର୍କରେ ଆସିଥିଲେ, ପୁଣି ମହାତ୍ମା

ଅଧ୍ୟକ୍ଷତାରେ ଗଠିତ ଏଜୁକେସନ୍ କମିସନ୍' (୧୯୬୪) ନିଜ ନିଜର ରିପୋର୍ଟ୍‌ରେ ବିଶ୍ୱବିଦ୍ୟାଳୟ ଓ କଲେଜ ଶିକ୍ଷକମାନଙ୍କ ଗବେଷଣା-କାର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଆମ ରାଜ୍ୟର ତଥା ବାହାରେ ଥିବା ଛଅଟି ବିଶ୍ୱବିଦ୍ୟାଳୟ ଓ ତତ୍ ସଂଲଗ୍ନ କଲେଜଗୁଡ଼ିକରେ କାର୍ଯ୍ୟରତ ଅଧ୍ୟାପକ-ଅଧ୍ୟାପିକାମାନେ ଓଡ଼ିଆ ସାହିତ୍ୟ ଉପରେ ବେଶ୍ ଗବେଷଣା ଚଳାଇଛନ୍ତି । ୧୯୮୭ ମସୀହା ମଧ୍ୟରେ ଏହି ବିଶ୍ୱବିଦ୍ୟାଳୟମାନଙ୍କରେ ସାହିତ୍ୟ ବିଷୟକ ଯେଉଁ ଗବେଷଣା-ପ୍ରବନ୍ଧ ସମୂହ ଅନୁମୋଦିତ ହୋଇଛି, ତାହାର ଯଥାସମ୍ଭବ ଏକ ପୂର୍ଣ୍ଣାଙ୍ଗ ତାଲିକା ଓଡ଼ିଆ ଗବେଷଣା ପରିଷଦର ମୁଖପତ୍ର 'ଏଷଣା'ର ପଞ୍ଚଦଶ ଓ ଷୋଡ଼ଶ ଖଣ୍ଡରେ (୧୯୮୭-୮୮) ପ୍ରକାଶ କରାଯାଇଥିଲା । ୧୯୮୭-ପରବର୍ତ୍ତୀ କାଳରେ ଆଉ ଯେଉଁ ଗବେଷଣା-ପ୍ରବନ୍ଧମାନ ଅନୁମୋଦିତ ହୋଇଛି, ତଥା ଯେଉଁ ଗବେଷଣା-ପ୍ରକଳ୍ପମାନ ବିଶ୍ୱବିଦ୍ୟାଳୟ ଦପ୍ତରରେ ରେଜିଷ୍ଟ୍ରେସନ୍ କରାଯାଇଛି, ତାହାର ତାଲିକାମାନ ଅନ୍ୟ କେତେକ ସଂସ୍ଥା ପ୍ରକାଶ କରିଛନ୍ତି । ଏହି ସବୁ ତାଲିକା ଦେଖିଲେ, ସାହିତ୍ୟ-ଗବେଷଣାର ପରିମାଣ ଘେନି ମନରେ ଆନନ୍ଦ ଜାତ-ହୁଏ । କିନ୍ତୁ ପ୍ରାଣରେ ପୀଡ଼ା ଲାଗେ, ଯେତେବେଳେ ମୁଁ ଦେଖେଁ ବିଚାର ବିଶ୍ଳେଷଣ ଓ ସାହିତ୍ୟ ଜ୍ଞାନର ଅଭିବୃଦ୍ଧି ପାଇଁ ତଥା ସାଂସ୍କୃତିକ ଧ୍ୟାନ-ଧାରଣାର ଦିଗ୍‌ବଳୟକୁ ସଂପ୍ରସାରିତ କରିବା ପାଇଁ ଉଦ୍ଦିଷ୍ଟ ବିଭିନ୍ନ ଗବେଷଣା-ପ୍ରକଳ୍ପର ସ୍ୱର୍ଣ୍ଣଫଳଗୁଡ଼ିକ ମଧ୍ୟରୁ ଅଧିକାଂଶ ଅପ୍ରକାଶିତ । ଅଥଚ 'ଇଉନିଭରସିଟି ଏଜୁକେସନ୍ କମିସନ୍' ପିଏଇଚ୍ : ଡ଼ି:, ଡି:ଲିଟ୍ : ଥେସିସ୍ ସମୂହର ମୁଦ୍ରିତାକାରରେ ପ୍ରକାଶନ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । କମିସନ୍ ସ୍ପଷ୍ଟ ଭାଷାରେ କହିଛନ୍ତି-ଅପ୍ରକାଶିତ ଗବେଷଣା-ପ୍ରବନ୍ଧ ଜ୍ଞାନର ଅଭିବୃଦ୍ଧି ସାଧନ କରେ ନା । ଡ଼ି: ଲିଟ୍: ବା ଡି: ଏସ୍‌ସି: ଭଳି ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀଗୁଡ଼ିକ କେବଳ ପ୍ରକାଶିତ ଗବେଷଣା-ପ୍ରବନ୍ଧ ଉପରେ ପ୍ରଦାନ କରାଯିବା ଉଚିତ ଏବଂ ଏହି ପ୍ରକାଶିତ କୃତିସମୂହ କେବଳ ମାତ୍ର ବହିଃ ପରୀକ୍ଷକଙ୍କ ଦ୍ୱାରା ପରୀକ୍ଷିତ ହେବା ଆବଶ୍ୟକ ।*

ଅର୍ଥାଭାବ କିମ୍ବା ପ୍ରକାଶକ ଅଭାବରୁ ଆମର ଥେସିସ୍‌ଗୁଡ଼ିକ ଯେ ମୁଦ୍ରିତାକାରରେ ପ୍ରକାଶିତ ହୋଇପାରୁନାହିଁ, ତାହା ନୁହେଁ ; ପ୍ରକାଶିତ ନ ହେବାର ଅନ୍ୟାନ୍ୟ କାରଣ ଥିବାର ମନେହୁଏ । ଅଧିକାଂଶ ଥେସିସ୍ ନିମ୍ନମାନର ହୋଇଥିବାରୁ ଆଦୌ ପ୍ରକାଶ-ଉପଯୋଗୀ ନୁହେଁ । ଏଥିରୁ ଜଣାପଡୁଛି ଯେ କେବଳ ଡିଗ୍ରୀ-ଲାଭ ପାଇଁ ସେହି ଥେସିସ୍‌ଗୁଡ଼ିକ ଲେଖା ଯାଇଛି । ମୁଦ୍ରାମନ୍ତ୍ରର ମୁଖ ଦେଖିବା ଦୂରେ ଥାଉ, କେତେକ ଡିଗ୍ରୀଧାରୀ ନିଜ ନିଜର ଥେସିସ୍ ଅନ୍ୟ କାହାରିକୁ ଥରେ ଦେଖାଇବା ପାଇଁ କୁଣ୍ଠିତ ଥିବାର ମୁଁ ଜାଣେ । କେତେ ବର୍ଷ ତଳେ ସତ୍ୟବାଦୀ ବନ-ବିଦ୍ୟାଳୟର ଜଣେ ଆଦର୍ଶ ଶିକ୍ଷକ ଓ ଲେଖକ ପଣ୍ଡିତ ବାସୁଦେବ ମହାପାତ୍ରଙ୍କର ଜନ୍ମ ଶତବାର୍ଷିକୀ ପାଳିତ ହେଉଥିଲା । ଶତବାର୍ଷିକୀ କମିଟିର ମୁଁ ଥିଲି ଅନ୍ୟତମ କର୍ମକର୍ତ୍ତା । କମିଟି ବୈଠକରେ ପଣ୍ଡିତ ମହାପାତ୍ରଙ୍କର ପୁତ୍ର ଡାକ୍ତର ଲକ୍ଷ୍ମୀକାନ୍ତ ମହାପାତ୍ର ପ୍ରସ୍ତାବ ଦେଲେ ଯେ-୧୯୮୭ରେ ଉତ୍କଳ

* The Report of the University Education Commission, Vol.-1, Published in 1950, pages 50 and 151

ବିଶ୍ୱବିଦ୍ୟାଳୟରେ 'ପଣ୍ଡିତ ବାସୁଦେବ ମହାପାତ୍ର: ଏକ ଅଧ୍ୟୟନ' ଶୀର୍ଷକ ଥେସିସ୍ ପିଏଚ୍.ଡି. ଡିଗ୍ରୀ ନିମନ୍ତେ ଅନୁମୋଦିତ ହୋଇଛି । ଶତ ବାର୍ଷିକୀ ପାଳନ ଉପଲକ୍ଷେ ଆମେ ସେହି ଥେସିସ୍‌ଟି ମୁଦ୍ରିତାକାରରେ ପ୍ରକାଶ କରିବା । ଉତ୍ତମ ପ୍ରସ୍ତାବ ! କମିଟିର ପରବର୍ତ୍ତୀ ବୈଠକରେ ଥେସିସ୍‌ଟି ଆଣି ଉପସ୍ଥାପନ କରିବାକୁ ଡିଗ୍ରୀଧାରୀ ଅଧ୍ୟାପକଙ୍କୁ ଖବର ଦିଆଗଲା । ଅଧ୍ୟାପକ-ବନ୍ଧୁ ବୈଠକକୁ ଆସିଲେ, ମାତ୍ର ଥେସିସ୍‌ଟି ସାଙ୍ଗରେ ଆଣିଲେ ନାହିଁ । ମୋ ମନରେ ସନ୍ଦେହ ହେଲା । ଥେସିସ୍ ମୁଦ୍ରିତାକାରରେ ପ୍ରକାଶ କରିବା ପାଇଁ ପରୀକ୍ଷକ-ମଣ୍ଡଳୀ ସୁପାରିଶ୍ କରିଛନ୍ତି କି ନା, ମୁଁ ଅଧ୍ୟାପକ ବନ୍ଧୁଙ୍କୁ ପଚାରିବାରୁ ସେ ନାହିଁ କଲେ ଏବଂ ଆପଣ ଗାଇଡ୍‌ଙ୍କଠାରୁ ଥେସିସ୍ ଛାପିବାର ସୁପାରିଶ୍ ଘେନି ଆସିବେ ବୋଲି ଜଣାଇଲେ । ତାଙ୍କର ଗାଇଡ୍ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସର୍ । ମୁଁ ଅସଲ କଥାଟି ବୁଝି ପାରିଲି । ଥେସିସ୍‌ଟି ଛାପିବା ପ୍ରସ୍ତାବ ବନ୍ଦ ରହିଲା । ପ୍ରଶ୍ନ ହେଉଛି-କେତେକ ଥେସିସ୍ ପ୍ରକାଶିତ ହେବା ପାଇଁ ପରୀକ୍ଷକଙ୍କ ଦ୍ୱାରା ସୁପାରିଶ୍ କରାଯାଉନାହିଁ, ଅଥଚ ଡିଗ୍ରୀ ପ୍ରଦାନ ପାଇଁ ଅନୁମୋଦନ କରାଯାଉଛି କିପରି ? କେତେକ ଅସାଧୁ ବ୍ୟବସାୟୀ ଯେପରି ଟିଣଡିବା ଉପରେ ବଡ଼ ବଡ଼ ଅକ୍ଷରରେ 'ଖାଣ୍ଟି ଗୁଆ-ଘିଅ ଲେଖା କରାଇ ତାହା ତଳକୁ ସାନ ସାନ ଅକ୍ଷରରେ 'ଦିଅ' ଦେବତା ପୂଜାରେ ଦୀପ ଜାଳିବା ପାଇଁ ନୁହେଁ' ଲେଖାଇ ଥାଆନ୍ତି, ଏହା ସେହିପରି କଥାଟିଏ ହେଉ ନାହିଁ କି ?

ସାହିତ୍ୟ-ବିଷୟକ ପ୍ରତ୍ୟେକ ଅନୁମୋଦିତ ପିଏଚ. ଡ଼ି. ଏବଂ ଡ଼ି.ଲିଟ୍. ଥେସିସ୍ ମୁଦ୍ରିତାକାରରେ ପ୍ରକାଶ ପାଇବା ଉଚିତ ; କିମ୍ବା ସମୁଦାୟ ଗବେଷଣା-ପ୍ରବନ୍ଧଟିକୁ ଖଣ୍ଡ ଖଣ୍ଡ କରି ଧାରାବାହିକ ଭାବରେ ପତ୍ରପତ୍ରିକାରେ ପ୍ରକାଶ କରାଯିବା ଉଚିତ । ବିଶ୍ୱବିଦ୍ୟାଳୟର ଉଚ୍ଚତର ଡିଗ୍ରୀ ଲାଭହେଉ ! ତାହା ସଙ୍ଗେ ସଙ୍ଗେ ନୂଆ ନୂଆ ଜ୍ଞାନ ଓ ବିଚାର ବିଶ୍ଳେଷଣ ପ୍ରକାଶିତ ତଥା ପ୍ରସାରିତ ହେଉ । ଯଦି କୌଣସି ଥେସିସ୍‌ରେ କୌଣସି ନୂତନ ତଥ୍ୟ ବା ତତ୍ତ୍ୱ ନାହିଁ, ଅଥବା କୌଣସି ପୁରୁଣା ତଥ୍ୟ ବା ତତ୍ତ୍ୱକୁ ନୂଆବାଗ ନୂଆଭଙ୍ଗୀରେ ବ୍ୟକ୍ତ କରିବାର ପ୍ରୟାସ ନାହିଁ, ସେପରି ଥେସିସ୍‌କୁ ଅନୁମୋଦନ ନ ମିଳୁ ! କିନ୍ତୁ କେବଳ ଡ଼ିଗ୍ରୀ ଲାଭ କାମନାରେ ଏଣୁତେଣୁ କରି ଥେସିସ୍‌ଟିଏ ପ୍ରସ୍ତୁତ କରି ଏବଂ ତାହାକୁ ଯେକୌଣସି ମତେ ପାଶ୍ କରାଇ ନେଇ ଶେଷରେ ବିଶ୍ୱବିଦ୍ୟାଳୟ ସଙ୍ଗାରେ ଥେସିସ୍‌ଟିକୁ କୀଟପତଙ୍ଗମାନଙ୍କର ଆହାର ପାଇଁ ଛାଡ଼ି ଦେବା ବିଜ୍ଞତାର କାର୍ଯ୍ୟ ହେବ କି ?

ଆମର ପ୍ରକାଶିତ ତଥା ଅପ୍ରକାଶିତ ଥେସିସ୍ ଗୁଡ଼ିକ ଅନୁଧ୍ୟାନ କଲେ, ଗବେଷଣାଯୋଗ୍ୟ ବିଷୟବସ୍ତୁର ବୈଚିତ୍ର୍ୟ ବା ବିବିଧତା ସଂପର୍କରେ ନିରାଶ ହେବାକୁ ପଡ଼େ । ପ୍ରାୟ ଏକ ହଜାର ବର୍ଷର ଓଡ଼ିଆ ସାହିତ୍ୟ ନାନା ରୀତି, ନାନା ଶୈଳୀ, ନାନା ଭାବ ଓ ବିଷୟରେ ସମୃଦ୍ଧ । ତେଣୁ ଗବେଷଣାଯୋଗ୍ୟ ବିଷୟର ଆଦୌ ଅପ୍ରତୁଳତା ନାହିଁ । କିନ୍ତୁ ଆମର ଅଧିକାଂଶ ଗବେଷକ ସେ ସଂପର୍କରେ ସଚେତନ ନୁହନ୍ତି । ସାହିତ୍ୟ କ୍ଷେତ୍ରରେ ଏପର୍ଯ୍ୟନ୍ତ ଅନାଲୋଚିତ ଓ ଅନାବିଷ୍କୃତ ଦିଗପ୍ରତି ଧ୍ୟାନ ଦେଇ ଗବେଷଣାଯୋଗ୍ୟ ବିଷୟରେ ନୂତନ ସମ୍ଭାବନା

ସଂପର୍କରେ ସେମାନେ ଅବହିତ ଥିଲା ପରି ଲାଗୁନାହିଁ ; ସର୍ବୋପରି ଗବେଷଣା-ପ୍ରକଳ୍ପର ବିଷୟ-ନିର୍ବାଚନ ବର୍ତ୍ତମାନ ଓ ଭବିଷ୍ୟତ୍ କାଳ ପାଇଁ ତାହାର ଉପଯୋଗିତା, ସଙ୍ଗତି ବା ପ୍ରାସଙ୍ଗିକତା ବିଚାର କରୁଥିବାର ଜଣାପଡୁନାହିଁ । ଗୋଟିଏ ବିଶ୍ୱବିଦ୍ୟାଳୟରେ ଏକ ନିର୍ଦ୍ଦିଷ୍ଟ ବିଷୟ ଘେନି ଖଡ଼ା-ବଡ଼ି ଥୋଡ଼, ଥୋଡ଼-ବଡ଼ି-ଖଡ଼ା ନ୍ୟାୟରେ ଗବେଷଣା-ପ୍ରବନ୍ଧମାନ ଲିଖିତ ହେବାରେ ଲାଗିଛି । ସେଥିପାଇଁ ଆମର ଶୋଚନା ନ ଥାନ୍ତା, ଯଦି ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଭିନ୍ନ ଭିନ୍ନ ପଦ୍ଧତିରେ ସେହି ନିର୍ଦ୍ଦିଷ୍ଟ ବିଷୟଟିର ଆଲୋଚନା-ଚର୍ଚ୍ଚା ହେଉ ଥାଆନ୍ତା !

ଆମର ଅଧିକାଂଶ ବିଶ୍ୱବିଦ୍ୟାଳୟ ତଥା ବଡ଼ ବଡ଼ ପ୍ରତିଷ୍ଠିତ କଲେଜମାନଙ୍କରେ ଯେଉଁ ରୀତିରେ ସାହିତ୍ୟ-ଗବେଷଣା ଚାଲିଛି, ସେ ସଂପର୍କରେ ପ୍ରାୟ ଦଶବର୍ଷତଳେ କିଛି ଅପ୍ରିୟ ଓ ପ୍ରେୟ ଉକ୍ତ୍ୟକାରୀ କଥା କହିଥିଲି-''କେତେକ ସ୍କଲାର୍-ଛାତ୍ର ଓ ଶିକ୍ଷକ-ଗାଇଡ୍ ନ୍ୟସ୍ତସ୍ୱାର୍ଥର ବଶବର୍ତ୍ତୀ-ସହଜ ଓ ସୁବିଧାରେ ରିସାର୍ଚ୍ଚ ଡ଼ିଗ୍ରୀଟିଏ ପାଇଯିବା ବା ଦେଇଦେବା ଲାଗି ବ୍ୟାକୁଳ । ଏହି ଉଦ୍ଦେଶ୍ୟ ଚରିତାର୍ଥ କରିବା ପାଇଁ ସେମାନେ ବିଭିନ୍ନ କୁଟିଳ ପଥ ବା ଅସାଧୁ ଉପାୟ ଅବଲମ୍ବନ କରୁଥିବାର ଦେଖାଯାଉଛି । ସ୍କଲାର୍-ଛାତ୍ରଙ୍କର ଶିକ୍ଷକ-ଗାଇଡ୍ ମନୋନୟନ, ଶିକ୍ଷକ-ଗାଇଡ୍‌ଙ୍କର ସ୍କଲାର୍-ଛାତ୍ର ଅନୁସନ୍ଧାନ, ଥେସିସ୍‌ର ପରୀକ୍ଷକ-ନିଯୁକ୍ତି ଏବଂ ପରୀକ୍ଷାକୁ ନିଜ ସପକ୍ଷରେ ନେବା ପାଇଁ ପରୀକ୍ଷା-ନିୟମର ସଂକୋଚନ-ସଂପ୍ରସାରଣ ଆଦି କ୍ଷେତ୍ରରେ ଏହି ଅସାଧୁ ଉପାୟ ପ୍ରକଟିତ ହେଉଛି । ନାମମାତ୍ର ଗବେଷଣାକୁ, ଜୀବିକା ବା ପେଟପାଟଣା ସହିତ ଛନ୍ଦି ଦେଇ ସେମାନେ ଭାଷା-ସାହିତ୍ୟର ପ୍ରକୃତ ଫଳପ୍ରଦ ଗବେଷଣାକୁ ଶସ୍ତା କରିଦେବାରେ ପଶ୍ଚାତ୍‌ପଦ ନୁହନ୍ତି । ବିଭାଗୀୟ ନୀତି-ନିୟମ ନିର୍ଦ୍ଧାରଣ କରୁଥିବା ବିଭିନ୍ନ ବିଶ୍ୱବିଦ୍ୟାଳୟ ତଥା ସ୍ୱୀକୃତିପ୍ରାପ୍ତ କଲେଜର ପଦାଧିକାରୀ ପୁରୁଖା ଶିକ୍ଷକମାନଙ୍କ ମଧ୍ୟରୁ ଅଧିକାଂଶ ସବଳ ବ୍ୟକ୍ତିତ୍ୱସଂପନ୍ନ ହୋଇନଥିବାରୁ ସେମାନେ ଏହି ଆତ୍ମଘାତୀ, ଗ୍ଲାନିକାରକ ପରିସ୍ଥିତିର ପରିବର୍ତ୍ତନ କରିବା ଦୂରେ ଥାଉ, ନିଜେ ସେହି ଅଶୁଭଚକ୍ରର ଗୋଟିଏ ଅର ବା ଦଣ୍ଡ ହୋଇ କାର୍ଯ୍ୟ କରୁଥିବାର ଜଣାଯାଉଛି ।'' (ଏଷଣା, ୧୬ଶ ଖଣ୍ଡ-୧୯୮୮) ଏବେ ଦଶ ବର୍ଷ ପରେ ଏହି ହୀନ କଦର୍ଯ୍ୟ ଅବସ୍ଥାର କୌଣସି ପରିବର୍ତ୍ତନ ହୋଇଥିବାର ଲକ୍ଷ୍ୟ କରୁନାହିଁ ।

ସାହିତ୍ୟର ଗବେଷଣା ମୁଖ୍ୟତଃ ରାଜ୍ୟ ମଧ୍ୟରେ ଥିବା ବିଶ୍ୱବିଦ୍ୟାଳୟ ତଥା ସ୍ୱୀକୃତିପ୍ରାପ୍ତ ବଡ଼ ବଡ଼ ପ୍ରତିଷ୍ଠିତ କଲେଜମାନଙ୍କରେ କରାଯାଇଥାଏ । ବିଶ୍ୱଭାରତୀ, ରାଞ୍ଚି, କଲିକତା ପ୍ରଭୃତି ଅଙ୍ଗୁଳିମେୟ କେତୋଟି ରାଜ୍ୟାନ୍ତର ବିଶ୍ୱବିଦ୍ୟାଳୟରେ ସେଥିପାଇଁ ସୁବିଧା ସୁଯୋଗ ରହିଛି । ହିନ୍ଦୀ, ବଙ୍ଗଳା ବା ତାମିଲ୍ ଭାଷାସାହିତ୍ୟର ଗବେଷଣା ଯେପରି ଭାରତ ତଥା ଭାରତ ବାହାରେ ଥିବା ବିଭିନ୍ନ ବିଶ୍ୱବିଦ୍ୟାଳୟରେ କରାଯାଇଥାଏ, ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେପରି ସୁଯୋଗ ଏ ଯାଏଁ ମିଳିପାରିନାହିଁ । ସେଥିପାଇଁ ଆମ ସାହିତ୍ୟର ଗବେଷଣା ସ୍ୱୟଂ ଆମକୁ ହିଁ ଏଠାରେ କରିବାକୁ ପଡ଼ିବ-କରିବାକୁ ପଡ଼ିବ ଯଥାସମ୍ଭବ ନିର୍ଭୁଲ ଓ ଉଚ୍ଚକୋଟୀର କରି । ଆମର ଗବେଷଣା-କାର୍ଯ୍ୟ ତ୍ରୁଟିଯୁକ୍ତ ବା ନିମ୍ନମାନର ହେଲେ, ଆମର ଭାଷା-ସାହିତ୍ୟ କ୍ଷତିଗ୍ରସ୍ତ ହେବ । କିନ୍ତୁ ଏଠାରେ

ଇଂରାଜୀ ସାହିତ୍ୟ, ଇତିହାସ, ମନୋବିଜ୍ଞାନ, ରସାୟନବିଦ୍ୟା, ଗଣିତଶାସ୍ତ୍ର ପ୍ରଭୃତିର ଗବେଷଣା ତ୍ରୁଟିଯୁକ୍ତ ଓ ନିମ୍ନମାନର ହେଲେ ସେହି ସେହି ବିଷୟ ବିଶେଷ କ୍ଷତିଗ୍ରସ୍ତ ହେବନାହିଁ । କାରଣ ପୃଥିବୀର ହଜାର ହଜାର ବିଶ୍ୱବିଦ୍ୟାଳୟ ଓ ଗବେଷଣାସଂସ୍ଥାମାନଙ୍କରେ ସେହି ବିଷୟ-ଗୁଡ଼ିକର ଗବେଷଣା ଚାଲିଛି । ଏ କଥା ସ୍ମରଣ ରଖି ଆମେ ସାହିତ୍ୟର ଗବେଷଣା ଚଳାଇଲେ, ନିଜର ପ୍ରଭୂତ ମଙ୍ଗଳ ଓ ଉପକାର କରି ପାରିବା ।

**ପୁନଶ୍ଚ**

ଏପର୍ଯ୍ୟନ୍ତ ମୋ ଭଳି ଜଣେ ସାଧାରଣ ଅଧ୍ୟାପକର ତତ୍ତ୍ୱାବଧାନରେ କିଛି ଗବେଷଣା-ପ୍ରକଳ୍ପ କାର୍ଯ୍ୟକାରୀ ହୋଇ ଗୋଟିଏ ଡ଼ି.ଲିଟ୍ . ଏବଂ ପନ୍ଦରଟି ପିଏଚ୍.ଡ଼ି. ଥେସିସ୍ ସମ୍ବଲପୁର ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅନୁମୋଦନ ଲାଭ କରିଛି । ଏହି ଷୋହଳଗୋଟି ଥେସିସ୍ ମଧ୍ୟରୁ ଡି.ଲିଟ୍ ଥେସିସ୍ ସମେତ ଏଗାରଟି ମୁଦ୍ରିତାକାରରେ ପ୍ରକାଶ ଲାଭ କରିଛି-ଶତକଡ଼ା ପ୍ରାୟ ପଞ୍ଚସ୍ତରୀ ଭାଗ । ବିଭିନ୍ନ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ପ୍ରତିଷ୍ଠିତ ଅଧ୍ୟାପକମାନଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟକାରୀ ହୋଇ ଅନୁମୋଦନ ଲାଭ କରିଥିବା ଥେସିସ୍ ବୋଧହୁଏ ଏହି ହାରରେ ପ୍ରକାଶିତ ହୋଇନାହିଁ । ମୋର ନିଜର ଥେସିସ୍‌ଟି ୧୯୬୮ ମସିହାରେ ପ୍ରକାଶ ଲାଭ କରିଥିଲା ; ୧୯୯୨ ରେ ଏହାର ତୃତୀୟ ସଂସ୍କରଣ ପ୍ରକାଶିତ ହୋଇଛି । ପ୍ରକାଶିତ ଏହି ଥେସିସ୍‌ଗୁଡ଼ିକ ଆମର ସାହିତ୍ୟ ବିଷୟକ ଜ୍ଞାନ ବୃଦ୍ଧି କରିଛି କି ନା, ଧ୍ୟାନ ଧାରଣାର ଦିଗ୍‌ବଳୟ ସଂପ୍ରସାରିତ କରିଛିକି ନା, ସଂସ୍କୃତିପ୍ରେମୀ ବିଜ୍ଞବ୍ୟକ୍ତିମାନେ ତାହା ବିଚାର ପୂର୍ବକ ସେଗୁଡ଼ିକର ମୂଲ୍ୟ ବା ମାନ ନିର୍ଦ୍ଧାରଣ କରିବେ ।

E-1, Utkal Apartments
Kalyani Nagar, Cuttack-13



# ଓଡ଼ିଆ ନାଟକ ଆଲୋଚନାର ଇତିବୃତ୍ତ

## ନୀଳାଦ୍ରି ଭୂଷଣ ହରିଚଂଦନ

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନାଟ୍ୟତତ୍ତ୍ୱ ଓ ନାଟ୍ୟ ସମୀକ୍ଷା ଗ୍ରନ୍ଥର ବହୁ ଅଭାବ ପରିଲକ୍ଷିତ ହୁଏ । ଏହାର ଦୁଇଟି କାରଣ ଉଲ୍ଲେଖ କରାଯାଇପାରେ । ପ୍ରଥମତଃ ଏ ପ୍ରକାର ଗ୍ରନ୍ଥ ପ୍ରତି ସାଧାରଣ ପାଠକଂକ ସ୍ୱାଭାବିକ ଅନାଗ୍ରହ, ଦ୍ୱିତୀୟତଃ ନାଟକକୁ ବିଶ୍ୱବିଦ୍ୟାଳୟ ସ୍ତରରେ ସମ୍ମାନଜନକ ସ୍ୱୟଂସଂପୂର୍ଣ୍ଣ ପାଠ୍ୟରୂପେ ଗ୍ରହଣ କରିବାରେ କୁଣ୍ଠା । ବର୍ତ୍ତମାନ ଓଡ଼ିଆ ସାହିତ୍ୟର ଅଧ୍ୟୟନ କ୍ଷେତ୍ରରେ ଏହା ଏକ ଅଧୀତ ବିଷୟ ହୋଇଥିବାରୁ କେତେକ ଅଧ୍ୟାପକ-ସମାଲୋଚକ ଅଳ୍ପ କେତୋଟି ନାଟ୍ୟ ବିଷୟକ ଗ୍ରନ୍ଥ ପ୍ରଣୟନ କରିଛନ୍ତି । ଏଥିମଧ୍ୟରୁ କେତେକ ଗ୍ରନ୍ଥରେ ଅନେକ ଉପାଦେୟ ତଥ୍ୟ ଓ ବିଚାର ଉପଲବ୍ଧ ହେଉଥିବା ସ୍ଥଳେ କେତେକ ଗ୍ରନ୍ଥ ପଠନଯୋଗ୍ୟ ନୁହେଁ । ନାଟକର ବିଚାର ଆଲୋଚନା କ୍ଷେତ୍ରରେ ଯେଉଁମାନଂକର ଯଥାର୍ଥ ଅବଦାନ ରହିଛି, ସେମାନଂକ କୃତିତ୍ୱ ଉପରେ ଆଲୋକପାତ କରିବା ଏ ପ୍ରବଂଧର ଲକ୍ଷ୍ୟ ।

ଜଣେ ନାଟ୍ୟକାର ଲାଗି ନାଟ୍ୟତତ୍ତ୍ୱ ସଂପର୍କିତ ଗଭୀର ଜ୍ଞାନ ଅପରିହାର୍ଯ୍ୟ ନୁହେଁ, କେବଳ ସାଧାରଣ ଧାରଣା ଯଥେଷ୍ଟ । ଦ୍ୱିତୀୟତଃ କଳାସୃଷ୍ଟି କ୍ଷେତ୍ରରେ ସ୍ରଷ୍ଟା ସଂପୂର୍ଣ୍ଣ ସ୍ୱାଧୀନ ହୋଇଥିବା ହେତୁ ତା ସୃଷ୍ଟିରେ ତତ୍ତ୍ୱଗତ ନିୟନ୍ତ୍ରଣ ରହେନାହିଁ । ପୁଣି ତତ୍ତ୍ୱବିତ୍ ନାଟ୍ୟକାରମାନଂକ ସଂଖ୍ୟା ମୁଷ୍ଟିମେୟ । ପ୍ରାଚୀନ ଯୁଗରେ ଭରତ ଏବଂ ଆଧୁନିକ ଯୁଗରେ ବେର୍ଟୋଲ୍ଟ, ବ୍ରେକ୍‌ସ୍‌ଟ ଉଭୟ ନାଟ୍ୟକାର ତଥା ନାଟ୍ୟବିତ । ତେବେ ନାଟ୍ୟତତ୍ତ୍ୱବିତ୍‌ମାନେ ବ୍ରେକ୍‌ସ୍‌ଟଙ୍କ ପରି ନିଜ ନାଟକର ସ୍ୱରୂପ ପ୍ରକୃତି ବିଚାର ନକରି ପୂର୍ବର ଲିଖିତ ପ୍ରସିଦ୍ଧ ନାଟ୍ୟକାରମାନଂକର କୃତି ଗୁଡ଼ିକର ସ୍ୱରୂପ ନିର୍ଦ୍ଧାରଣ କରିଥାନ୍ତି । ଆରିଷ୍ଟୋଟଲ୍ (ଖ୍ରୀ:ପୂ: ୩୯୪), ଏସ୍କିଲସ୍, ଆରିଷ୍ଟୋଫୋନିସ୍ ଆଦି ନାଟ୍ୟକାରମାନଂକ ରଚନା ଅନୁସରଣରେ ଏବଂ ଭରତ (ଖ୍ରୀ.୩୩୪), ଅଶ୍ୱଘୋଷ, ଭାସ ଆଦି ନାଟ୍ୟକାରମାନଂକ ନାଟକର ଅନୁସରଣରେ ନିଜର ନାଟ୍ୟତତ୍ତ୍ୱ ନିର୍ମାଣ କରିଥିବା ଅନୁମିତ ହୁଏ ।

ଓଡ଼ିଆ ଭାଷାର ପ୍ରଥମ ପ୍ରକାଶିତ ନାଟକ 'ବାବାଜୀ' (୧୮୭୭) କୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏହା କୌଣସି ପ୍ରାଚ୍ୟ ବା ପାଶ୍ଚାତ୍ୟ ନାଟ୍ୟସୂତ୍ରଦ୍ୱାରା ପ୍ରଭାବିତ ନୁହେଁ । ନାଟ୍ୟକାରର ଆଙ୍ଗିକକଳ୍ପନା ସଂପୂର୍ଣ୍ଣ ନିଜସ୍ୱ । ଦ୍ୱିତୀୟ ପ୍ରକାଶିତ ନାଟକ 'କାଞ୍ଚିକାବେରୀ' (୧୮୮୧) ଉଭୟ ସଂସ୍କୃତ ଓ ସେକ୍ସପିୟରୀୟ ନାଟ୍ୟରୀତି ଗ୍ରହଣ କରିଥିବାରୁ ଯଥାର୍ଥ ନାଟକ ରୂପେ ବିବେଚିତ ହୋଇ ପ୍ରସିଦ୍ଧି ଲାଭ କରିଥିଲେ ।

ନାଟ୍ୟକାର ବୀର ବିକ୍ରମ ଦେବ ଓଡ଼ିଆ ନାଟକ ଉପରେ କୌଣସି ସମାଲୋଚନା ନ

ଲେଖିଥିଲେ ମଧ୍ୟ ପ୍ରଥମ ଥର ପାଇଁ ଓଡ଼ିଆରେ ଦୁଇଟି ନାଟ୍ୟତତ୍ତ୍ୱ ସଂପର୍କିତ ଗ୍ରନ୍ଥ 'ଅଭିନୟ ପ୍ରକାଶିକା' (୧୯୧୧) ଓ 'ନାଟକ ରଚନା ପ୍ରଣାଳୀ' (୧୯୦୩) ପ୍ରଣୟନ କରିଥିଲେ । ଓଡ଼ିଆ ନାଟକର ପ୍ରାଥମିକ ବିକାଶ କାଳରେ ସ୍ୱଳ୍ପ ସଂଖ୍ୟକ ନାଟକ ରଚିତ ହୋଇଥିବା ସମୟରେ ଏପରି ଗ୍ରନ୍ଥ ପ୍ରଣୟନ ଏକ ଅଭିନବ ପ୍ରଚେଷ୍ଟା ନିଶ୍ଚୟ । 'ଅଭିନୟ ପ୍ରକାଶିକା'ରେ ନୃତ୍ୟ ସଂପର୍କିତ କେତୋଟି ଅଭିନୟ ମୁଦ୍ରାର ଉଲ୍ଲେଖ ରହିଥିବା ସ୍ଥଳେ ଅନ୍ୟ ଗ୍ରନ୍ଥଟି ନାଟକ ରଚନାର ବିଧି ଉପରେ ଆଧାରିତ । ଅବଶ୍ୟ ଏ ଦୁଇଟି ଗ୍ରନ୍ଥର ବକ୍ତବ୍ୟ ଭରତଂକ ନାଟ୍ୟଶାସ୍ତ୍ରରୁ ସଂପୂର୍ଣ୍ଣ ଆହୃତ; ଓଡ଼ିଆ ନାଟକ ଅବଲମ୍ବିତ କୌଣସି ସୂତ୍ର ପ୍ରଣୟନ ନୁହେଁ ।

ନାଟ୍ୟତତ୍ତ୍ୱ ଓ ସମୀକ୍ଷା ସଂପର୍କିତ ପ୍ରଥମ ବିଧିବଦ୍ଧ ମୌଳିକ ଗ୍ରନ୍ଥ ହେଉଛି ଗିରିଜା ଶଂକର ରାୟଂକ 'ଓଡ଼ିଆ ନାଟ୍ୟକଳା' (୧୯୪୩) । ଇଂରାଜୀ ଅଧ୍ୟାପକ ରାୟ ମହାଶୟ ଓଡ଼ିଆ ନାଟ୍ୟକଳାରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟ୍ୟରୀତିର ଉପସ୍ଥାପନ କରିଛନ୍ତି । ଅନେକ ସ୍ଥଳରେ ନିଜସ୍ୱ ଦୃଷ୍ଟିରୁ ତତ୍ତ୍ୱଗୁଡ଼ିକର ବ୍ୟାଖ୍ୟା କରିଛନ୍ତି । ପ୍ରୟୋଜନବୋଧରେ ରାମଶଂକର ରାୟଂକ 'କାଞ୍ଚିକାବେରୀ' ନାଟକର ବିଭିନ୍ନ ପ୍ରସଂଗ ଉଦାହରଣ ରୂପେ ବ୍ୟବହାର କରିଛନ୍ତି । ଏହିଠାରେ ନାଟ୍ୟତତ୍ତ୍ୱ ସହିତ ପ୍ରଥମ ଥର ପାଇଁ ଓଡ଼ିଆ ନାଟକ ଆଲୋଚନାର ପର୍ଯ୍ୟାୟକୁ ଆସିଛି । ପ୍ରାଥମିକ ରଚନା ଦୃଷ୍ଟିରୁ ଏଥିରେ ଭାଷା ଓ ବକ୍ତବ୍ୟରେ କିଛି ପରିମାଣରେ କ୍ଲିଷ୍ଟତା ରହିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହାର ଅନନ୍ୟତା ସ୍ୱୀକୃତ ।

ଅଧ୍ୟାପକ ସର୍ବେଶ୍ୱର ଦାଶ ପରବର୍ତ୍ତୀ କାଳରେ 'ନାଟକ ବିଚାର' (୧୯୫୬) ରଚନା କରି ନାଟ୍ୟ-ଆଲୋଚନା ଧାରାକୁ ଅବ୍ୟାହତ ରଖିଥିଲେ । ଓଡ଼ିଆ ନାଟ୍ୟକଳା କ୍ଲିଷ୍ଟତା ଓ ଅସଂପୂର୍ଣ୍ଣତା ହେତୁ ବିଶେଷ ଆଦୃତ ହୋଇ ପାରିନଥିଲା । ଏହା ତୁଳନାରେ ସର୍ବେଶ୍ୱର ଦାଶଂକ ଗ୍ରନ୍ଥ ବହୁ ପରିମାଣରେ ସୁବୋଧ ଥିଲା । ଗିରିଜାଶଂକର ପାଶ୍ଚାତ୍ୟ ନାଟ୍ୟରୀତି ଉପରେ ଅଧିକ ଗୁରୁତ୍ୱ ଦେଇଥିବା ସ୍ଥଳେ ଅଧ୍ୟାପକ ଦାଶ ପ୍ରାଚ୍ୟ ନାଟ୍ୟରୀତି ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । ନାଟକ ବିଚାରରେ ନାଟକ ସଂପର୍କିତ ବିଚାର-ବିମର୍ଶ ସଂକ୍ଷିପ୍ତ ଓ ଅପୂର୍ଣ୍ଣାଙ୍ଗ । ଏହା ପ୍ରଥମେ ପ୍ରଥମେ ପାଠକମାନଂକର ଶ୍ରଦ୍ଧାନ୍ୱିତ ଦୃଷ୍ଟି ଆକର୍ଷଣ କରିଥିଲେ ମଧ୍ୟ ପରେ ସେମାନଂକର ଆଗ୍ରହରୁ ବହୁ ପରିମାଣରେ ବଂଚିତ ହୋଇଛି । ଏହା ଅନୁଭବ କରି ବହୁ ପରେ ଅଧ୍ୟାପକ ଦାଶ ଏହାର ଏକ ପରିବର୍ଦ୍ଧିତ ସଂସ୍କରଣ 'ଓଡ଼ିଆ ନାଟ୍ୟ ସାହିତ୍ୟ' (୧୯୮୧) ଓଡ଼ିଆ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା ଆନୁକୂଲ୍ୟରେ ପ୍ରକାଶ କରାଇଛନ୍ତି । ଏହି ଦ୍ୱିତୀୟ ସଂସ୍କରଣଟିକୁ ମଧ୍ୟ ନାଟ୍ୟତତ୍ତ୍ୱ ବିଷୟକ ଏକ ପୂର୍ଣ୍ଣାଙ୍ଗ ଆଲୋଚନା ବୋଲି କହି ହେବନାହିଁ ।

ପ୍ରଥମ ଗ୍ରନ୍ଥ ଦୁଇଟିରେ କେବଳ ତାତ୍ତ୍ୱିକ ବିଚାର ରହିଥିବାରୁ ଓଡ଼ିଆ ନାଟକର ବିକାଶ ଧାରା ସଂପର୍କିତ ଏକ ଇତିହାସ ଗ୍ରନ୍ଥର ପ୍ରୟୋଜନୀୟତା ଅନୁଭୂତ ହେଉଥିଲା । ବହୁଦିନର ଏହି ଅଭାବ ପୂର୍ଣ୍ଣ ହେଲା ଶ୍ରୀ ବୀର କିଶୋର ଦାସଂକ 'ଯୁଗେ ଯୁଗେ ନାଟ୍ୟ ସାହିତ୍ୟ' (୧୯୬୫)

ରଚନାରେ । ଏଥିରେ ନାଟ୍ୟତତ୍ତ୍ୱ ସହିତ ଓଡ଼ିଆ ନାଟକର ଏକ ପୂର୍ଣ୍ଣାଙ୍ଗ ବିବରଣୀ ପ୍ରଦତ୍ତ । ବିକାଶଧାରାମୂଳକ ଇତିହାସ ରୀତିରେ ଲିଖିତ ନ ହେଲେ ମଧ୍ୟ କାଳାନୁକ୍ରମିକଭାବେ ବିଭିନ୍ନ ନାଟ୍ୟକାରଂକର ପରିଚୟ ଓ ନାଟ୍ୟସୃଷ୍ଟିର ବିବରଣୀ ଉପସ୍ଥାପନ ଯୋଗୁଁ ଏହାର ଉପାଦେୟତା ସ୍ୱୀକାର୍ଯ୍ୟ । ଶ୍ରୀ ଦାସ ବହୁ ଆୟାସ କରି ଅଧିକାଂଶ ନାଟକକୁ ପାଠ କରିଛନ୍ତି ଏବଂ ତାର କଥାବସ୍ତୁକୁ ଏହି ପୁସ୍ତକରେ ସନ୍ନିବେଶ କରିଛନ୍ତି । ପ୍ରଥମ ନାଟ୍ୟକାର ଜଗନ୍ମୋହନ ଲାଲାଂକଠାରୁ ଆରଂଭ କରି ସାଂପ୍ରତିକ ସମୟର ନାଟ୍ୟକାର ମାନଂକର କୃତିଗୁଡ଼ିକ ଉପରେ ତାଂକର ଆଲୋଚନା ଓଡ଼ିଆ ନାଟକର ଆତ୍ମିକ ଓ ଆଂଗିକ ଉପରେ ଏକ ସ୍ଥୂଳ ଧାରଣା ସୃଷ୍ଟି କରିଥାଏ । ଏଥିରେ ସନ୍ନିବିଷ୍ଟ ଓଡ଼ିଶାର ରଂଗମଂଚର ବିକାଶକ୍ରମ ସଂପର୍କିତ ବିବରଣୀ ଗୁରୁତ୍ୱପୂର୍ଣ୍ଣ । ୧୯୭୫ ମସିହାରେ ଏହି ପୁସ୍ତକର ଏକ ପରିବର୍ଦ୍ଧିତ ଓ ପରିମାର୍ଜିତ ସଂସ୍କରଣ ପ୍ରକାଶିତ ହୋଇଛି । ଏଥିରେ ପ୍ରୟୋଗଧର୍ମୀ ମୁକ୍ତଧାରା ନାଟକଗୁଡ଼ିକର ଆଲୋଚନା ସଂଯୋଜିତ । ଶ୍ରୀ ଜାନକୀବଲ୍ଲଭ ମହାନ୍ତି ଙ୍କ ‘‘ଓଡ଼ିଆ ନାଟକର ଚଳନ୍ତିଯୁଗ ଓ ପ୍ରତିଭା’’ (୧୯୬୭) ଏବଂ ଶ୍ରୀ ନାରାୟଣ ଶତପଥୀଂକ ‘‘ଓଡ଼ିଆ ନାଟକ ଓ ନାଟ୍ୟକାର’’ ଏହି ସମୟର ଏକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ । ମହାନ୍ ନାଟ୍ୟକାର କବିଚନ୍ଦ୍ର କାଳୀଚରଣ ନାଟ୍ୟ ରଚନା କ୍ଷେତ୍ରରୁ ଅବ୍ୟାହତି ନେବାପରେ ଶେଷ ବୟସରେ ନାଟ୍ୟତତ୍ତ୍ୱ ସଂପର୍କିତ ପୁସ୍ତକ ରଚନା କରିବାର ବ୍ୟର୍ଥ ପ୍ରୟାସ କରିଥିଲେ । ଏହାର ଫଳଶ୍ରୁତି ‘‘ମଞ୍ଚଧାରା’’ (୧୯୭୩) । ସଂଗୀତ ନାଟକ ଏକାଡେମୀ ଫେଲୋସିପ୍ ପାଇଥିବା ହେତୁ ହୁଏତ ତାଂକୁ ଏହି ଉଦ୍ୟମ କରିବାକୁ ପଡ଼ିଛି । ‘‘ମଞ୍ଚଧାରା’’ ଭରତଂକ ନାଟ୍ୟଶାସ୍ତ୍ରର ଅନୁସରଣରେ ଲିଖିତ ଏକ ତତ୍ତ୍ୱମୂଳକ ପୁସ୍ତକ । କିନ୍ତୁ କାଳୀଚରଣ ଭରତଂକ ନାଟ୍ୟଶାସ୍ତ୍ରର ଉପଯୁକ୍ତ ବ୍ୟାଖ୍ୟା ପ୍ରଦାନ କରି ପାରିନାହାନ୍ତି । ଦ୍ୱିତୀୟତଃ ତାଂକର ବକ୍ତବ୍ୟ ଦୁର୍ବଳ ଗଦ୍ୟଭାଷା ଓ ଶୈଳୀ ଯୋଗୁଁ ବହୁ ସମୟରେ ଅସ୍ପଷ୍ଟ ଓ ଅର୍ଥହୀନ ହୋଇ ପଡ଼ିଛି ।

କବିଚନ୍ଦ୍ର କାଳୀଚରଣଂକ ସମସାମୟିକ ନାଟ୍ୟକର୍ମୀ ସାରଦା ପ୍ରସାଦ ଦଳବେହେରା ପ୍ରଥମ ଥର ପାଇଁ ଓଡ଼ିଶାର ରଂଗମଂଚ ସଂପର୍କରେ ‘‘ଓଡ଼ିଶା ରଂଗମଂଚର ଇତିହାସ’’ (୧୯୭୧) ପୁସ୍ତକ ରଚନା କରିଥିଲେ । ଶ୍ରୀ ଦଳବେହେରାଂକ ପୁସ୍ତକ ରଚନା ବିଷୟରେ କୌଣସି ଧାରଣା ନଥିବାରୁ କଥା କହିବା ଶୈଳୀରେ ବିଭିନ୍ନ ମଂଚଗୁଡ଼ିକ ସହିତ ତାଂକର ସଂପୃକ୍ତି ଓ ନାଟ୍ୟଶାଳାର ଅବସ୍ଥିତି, ପ୍ରତିଷ୍ଠାତା ଓ ପରିଚାଳକ, ଅଭିନେତା, ଅଭିନେତ୍ରୀ, ଓ ଅଭିନୀତ ନାଟକର ବିବରଣୀ ପ୍ରଦାନ କରିଛନ୍ତି । ଏଥିରେ କିନ୍ତୁ ଅଧିକାଂଶ ପ୍ରସିଦ୍ଧ ରଂଗମଂଚର ବିବରଣୀ ନାହିଁ । ଏହା ଯଥାର୍ଥରେ ରଂଗମଂଚର ଇତିହାସ ନୁହେଁ, କେତେକ ରଂଗମଂଚ ସଂପର୍କିତ ତଥ୍ୟର ସଂକଳନ ମାତ୍ର ।

ରଂଗମଂଚ ସଂପର୍କିତ ଦ୍ୱିତୀୟ ପୁସ୍ତକ କାର୍ତ୍ତିକ କୁମାର ଘୋଷଂକ ‘ଓଡିଶାର ରଂଗମଂଚ ଓ ମୋର ନଟ ଜୀବନ’ ଅଧିକ ସ୍ପଷ୍ଟ, ଧାରାନୁବନ୍ଧ ଓ ତଥ୍ୟମୂଳକ । ଶ୍ରୀ ଘୋଷ ଥିଲେ ମହାନ୍ ନାଟ୍ୟକାର ଅଶ୍ୱିନୀକୁମାର ଘୋଷଂକ ଅନୁଜ ଓ ସହଧର୍ମା । ଅଶ୍ୱିନୀକୁମାରଂକ ବହୁ ନାଟକର ପ୍ରଥମ ଅଭିନୟକୁ ସଫଳ କରାଇବାରେ ଅଭିନେତା ଓ ନିର୍ଦ୍ଦେଶକ ଭାବେ ତାଂକର ଭୂମିକା ସ୍ୱୀକୃତ

ସେ ନିଜେ ନାଟ୍ୟକାର ଓ ଅଭିନେତା ଥିବାରୁ ଓଡ଼ିଶାର ତତ୍କାଳୀନ ରଂଗମଂଚଗୁଡ଼ିକ ସହିତ ତାଂକର ସଂପର୍କ ଥିଲା ଅତ୍ୟନ୍ତ ଘନିଷ୍ଠ । ପ୍ରଥମତଃ ସେ ତାଂକର ନଟଜୀବନ ଆରଂଭ କରିଥିଲେ ବନମାଳୀ ପତିଂକ ପ୍ରତିଷ୍ଠିତ ବଲଂଗା ଥିଏଟରରୁ । ଏଠାରେ ତାଂକର ସେ ସମୟର ବିଶିଷ୍ଟ ଅଭିନେତା ଅଭିନେତ୍ରୀମାନଂକ ସହ ସଂଯୋଗ ଘଟିଥିଲା । ଫଳରେ ରଂଗମଂଚ ସଂପର୍କିତ ତାଂକର ଅନୁଭୂତି ସହିତ ତଥ୍ୟାତ୍ମକ ବିବରଣୀ ସମନ୍ୱିତ ହୋଇ ପୁସ୍ତକଟି ଏକ ସରସ ରଚନାରେ ପରିଣତ ହୋଇଛି । ଏହି ପୁସ୍ତକରେ ତତ୍କାଳୀନ ପ୍ରସିଦ୍ଧ ମଂଚଗୁଡ଼ିକର ସୂଚନା ମାତ୍ର ରହିଛି । କିଂତୁ ବଲଂଗା ଥିଏଟର୍ ସଂପର୍କରେ ବିଶଦଭାବେ ଆଲୋଚନା କରାଯାଇଛି । ଓଡ଼ିଆ ନାଟକ ଓ ନାଟ୍ୟଶିଳ୍ପର ବିକାଶ ଦିଗରେ ବଲଂଗା ଥିଏଟର୍‌ର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲେ ମଧ୍ୟ ତା ସଂପର୍କରେ କୌଣସି ତଥ୍ୟ ସଂବଳିତ ପୂର୍ଣ୍ଣାଙ୍ଗ ଆଲୋଚନା ହୋଇ ନଥିଲା ଏ ଦିଗରେ ଶ୍ରୀ ଘୋଷଂକ କୃତିତ୍ୱ, ଅବଶ୍ୟ ସ୍ୱୀକାର୍ଯ୍ୟ । ୧୯୭୭ରେ ପ୍ରକାଶିତ କୃଷ୍ଣ ଚରଣ ବେହେରାଂକ 'ନାଟ୍ୟ ସାହିତ୍ୟ ପରିଚୟ' ନାଟ୍ୟତତ୍ତ୍ୱ ସଂପର୍କିତ ତୃତୀୟ ପୁସ୍ତକ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟ୍ୟତତ୍ତ୍ୱର ସୁସ୍ପଷ୍ଟ ବିବେଚନ ହେତୁ ଏହା ଜନପ୍ରିୟତା ଲାଭ କରିଛି । ଏଥିରେ ନାଟକର ପ୍ରକୃତି, ଉପାଦାନ, ପ୍ରକାରଭେଦ ସହିତ ଗ୍ରୀକ୍ ନାଟକ ଓ ନାଟ୍ୟସ୍ଥାନ ଏବଂ ସଂସ୍କୃତ ନାଟକ ଓ ନାଟ୍ୟସ୍ଥାନ ଉପରେ ବିଶଦ ଆଲୋଚନା ରହିଛି । ନାଟ୍ୟତତ୍ତ୍ୱ ସଂପର୍କିତ ପ୍ରାମାଣିକ ପୁସ୍ତକ ଭାବରେ ଏହାର ପ୍ରତିଷ୍ଠା ଏପର୍ଯ୍ୟନ୍ତ ଅବ୍ୟାହତ ।

୧୯୭୦ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ସମାଲୋଚନା କ୍ଷେତ୍ରରେ ନାଟକର ଆଲୋଚନା ପ୍ରୟାସ ଅତ୍ୟନ୍ତ କ୍ଷୀଣ । ସମସାମୟିକ ନାଟକ ସଂପର୍କରେ, କେତେକ ଆଲୋଚନା ମଝିରେ ମଝିରେ ପ୍ରକାଶିତ ହୋଇଛି । ନିତ୍ୟାନଂଦ ଶତପଥୀ, ଦାଶରଥି ଦାସ, ପ୍ରଭାତନଳିନୀ ଦାସ, ହେମନ୍ତ କୁମାର ଦାସ, ରତ୍ନାକର ଚଇନି, ନୀଳାଦ୍ରି ଭୂଷଣ ହରିଚଂଦନ ପ୍ରମୁଖ କେତେକ ପ୍ରବଂଧ ରଚନା କରି ଆଧୁନିକ ଓଡ଼ିଆ ନାଟକ ସଂପର୍କରେ ସଚେତନତା ସୃଷ୍ଟି କରିଛଂତି । କିନ୍ତୁ ଏହି ସମୟରେ ବିଧିବଦ୍ଧଭାବେ ନାଟକକୁ ଗବେଷଣାର ବିଷୟଭାବେ ଗ୍ରହଣ କରି ନେଇଥିଲେ ହେମନ୍ତ କୁମାର ଦାସ, ରତ୍ନାକର ଚଇନି, ଓ ନୀଳାଦ୍ରି ଭୂଷଣ ହରିଚଂଦନ । ସେମାନଂକ ଗବେଷଣାରେ ମୁଖ୍ୟତଃ ଐତିହାସିକ ପଦ୍ଧତି ଅବଲମ୍ବନ କରାଯାଇଛି । ଶ୍ରୀ ଦାସ ଓ ଶ୍ରୀ ଚଇନି ପ୍ରାୟତଃ ସମାନ ବିଷୟ ଉପରେ ଗବେଷଣା ମହାନିବଂଧ ପ୍ରସ୍ତୁତ କରିଛନ୍ତି । ହେମନ୍ତ କୁମାର ଦାସ 'ଓଡ଼ିଆ ନାଟକ: ଉଦ୍ଭବ ଓ ବିକାଶ' (୧୯୮୦) ଏବଂ ରତ୍ନାକର ଚଇନି 'ଓଡ଼ିଆ ନାଟକର ଉଦ୍ଭବ ବିକାଶ' (୧୯୭୯) ଗ୍ରନ୍ଥ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି. ଏଚ .ଡ଼ି. ଡିଗ୍ରୀ ଲାଭ କରିଛନ୍ତି । ପରେ ନୀଳାଦ୍ରି ଭୂଷଣ ହରିଚଂଦନଂକୁ 'ଓଡ଼ିଆ ନାଟକରେ ଇତିହାସର ପ୍ରତିଧ୍ୱନି' (୧୯୮୨) ଗ୍ରନ୍ଥ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍. ଡ଼ି. ଡ଼ିଗ୍ରୀ ମିଳିଛି । ଉକ୍ତ ତିନୋଟି ଗ୍ରନ୍ଥ ଯଥାକ୍ରମେ କଟକର ଫ୍ରେଣ୍ଡସ୍ ପବ୍ଲିଶସ୍, ବୁକ୍‌ସ୍ ଆଣ୍ଡ ବୁକ୍‌ସ ଏବଂ ବିଦ୍ୟାପୁରୀ ଦ୍ୱାରା ପ୍ରକାଶିତ । କିଞ୍ଚିତ୍ ବିଳମ୍ବରେ 'ଓଡ଼ିଆ ନାଟ୍ୟ-ସାହିତ୍ୟ ଓ ରାମଶଂକର ରାୟ' (୧୯୮୧) ପାଇଁ ପିଏଚ୍. ଡ଼ି. ଡିଗ୍ରୀ ଲାଭ କରି ଶ୍ରୀ କୁଳମଣି ରାଉତ ନିଜର ଗବେଷଣା ମହାନିବଂଧକୁ ଓଡ଼ିଶା ବୁକ୍ ଷ୍ଟୋର୍‌ଂକ ଦ୍ୱରା ପ୍ରକାଶିତ କରାଇଛନ୍ତି

ନାଟକ ଉପରେ କରାଯାଇଥିବା ପ୍ରଥମ ଦୁଇଟି ଗବେଷଣା ମହାନିବଂଧ ଓଡ଼ିଆ ନାଟକର କ୍ରମବିକାଶ ସଂପର୍କିତ ଦୁଇଟି ପ୍ରାମାଣିକ ଗ୍ରନ୍ଥ ।. ଏପର୍ଯ୍ୟନ୍ତ ଓଡ଼ିଆ ନାଟକର ଇତିହାସ ରଚିତ ହୋଇ ନ ଥିବା ସ୍ଥଳେ ଏ ଦୁଇଟି ଗ୍ରନ୍ଥକୁ ଆଶାରୁ ଅଧିକ ବୋଲି କହିବାକୁ ହେବ । ତେବେ ଏ ଦୁଇଟିରେ କାଳୀଚରଣଂକ ପର୍ଯନ୍ତ ଲିଖିତ ଓଡ଼ିଆ ନାଟକର କ୍ରମବିକାଶର ଏକ ସ୍ୱଷ୍ଟ ଚିତ୍ର ପ୍ରଦତ୍ତ । ଏଗୁଡ଼ିକରେ ଓଡ଼ିଆ ନାଟକର ଐତିହାସିକ ପୃଷ୍ଠପଟ, ବିଷୟବସ୍ତୁ ଆହରଣ, କଥାବସ୍ତୁର ସଜ୍ଜୀକରଣ ଓ ଆଂଗିକ ବୈଚିତ୍ର୍ୟର ବ୍ୟାପକ ଆଲୋଚନା କରାଯାଇଛି । ଗବେଷଣା ନିବଂଧକୁ ସ୍ଥୂଳାକାର ନ କରିବା ଲାଗି ଏ ଦୁଇଜଣ ଗୋଟିଏ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଆବଦ୍ଧ ରହିଛଂତି । ହେମନ୍ତ କୁମାର ଦାସଂକ ଗବେଷଣା ନିବଂଧରେ କ୍ଲାସିକ୍ ଗ୍ରୀକ୍, ରୋମାନ୍, ସଂସ୍କୃତ ନାଟ୍ୟରୀତି ଏବଂ ଓଡ଼ିଶାର ରଂଗମଂଚ ସଂପର୍କିତ ତଥ୍ୟ ଅଧିକ ଭାବେ ପରିବେଷଣ କରାଯାଇଥିବା ସ୍ଥଳେ ରତ୍ନାକର ଚଇନିଂକ ଗ୍ରନ୍ଥରେ ଓଡ଼ିଶାର ଲୋକନାଟ୍ୟ ସଂପର୍କିତ ଆଲୋଚନା ଉପରେ ଗୁରୁତ୍ୱ ଆରୋପିତ ହୋଇଛି । ଦୁଇଟି ଗ୍ରନ୍ଥରୁ ଓଡ଼ିଶାର ବିଭିନ୍ନ ନାଟ୍ୟ ଆନ୍ଦୋଳନ, ନାଟକ କ୍ଷେତ୍ରରେ ପ୍ରତିଭାଧର ନାଟ୍ୟକାରମାନଂକର ଉତ୍‌ଥାନ, ପ୍ରଭାବ ଓ ପ୍ରତିଷ୍ଠା, ୧୮୭୭ରୁ ୧୯୪୦ ପର୍ଯନ୍ତ ଲିଖିତ ନାଟକଗୁଡ଼ିକର ସ୍ୱରୂପ-ପ୍ରକୃତି ଉପରେ ବିସ୍ତୃତ ଆଲୋଚନା କରାଯାଇଛି ।

ଏ ଦୁଇଜଣ ଆଲୋଚକଂକ ଆଲୋଚନାରେ କେତେକ ସୃଜନଶୀଳତା ଲକ୍ଷ୍ୟ କରିହୁଏ । ରତ୍ନାକର ଚଇନି ମୂଳତଃ ନାଟ୍ୟକାର, ପରେ ବୈଷୟିକ କର୍ମାନୁରୋଧରେ ନାଟ୍ୟ-ସାହିତ୍ୟ ଆଲୋଚକ ହୋଇଛଂତି । ହେମନ୍ତ କୁମାର ଦାସ ମୂଳତଃ ନାଟ୍ୟ-ସମାଲୋଚକ ହେଲେ ମଧ୍ୟ ପରବର୍ତ୍ତୀ ସମୟରେ ମୌଳିକ ନାଟକ ରଚନାରେ ଆଗ୍ରହୀ ହୋଇଛଂତି । ଦିନେ ରତ୍ନାକର ଚଇନି 'ଉଦ୍ଭଟ ନାଟ୍ୟ ପରଂପରା' ଲେଖି ଓଡ଼ିଆ ନାଟ୍ୟ ସମାଲୋଚନା କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କରିଥିଲେ । ୧୯୬୪ ପରେ ଓଡ଼ିଶାରେ ଉଦ୍ଭଟ ନାଟକ ଭାବେ ପରିଚିତ ପ୍ରୟୋଗବାଦୀ ମୁକ୍ତ ଶୈଳୀ ବିଶିଷ୍ଟ ନାଟକଗୁଡ଼ିକ ପ୍ରତି ବୁଦ୍ଧିଜୀବୀ ପାଠକମାନଂକର ଗଭୀର ଅନୁସନ୍ଧିତ୍ସା ରହିଥିଲା । ଉଦ୍ଭଟ ନାଟକ ବିଷୟକ ଆଲୋଚନାରେ ଶ୍ରୀ ଚଇନି ଏହି କୌତୂହଳକୁ ଉଜ୍ଜୀବିତ କରିଥିଲେ । ଗବେଷଣା ମହାନିବଂଧଟି ପ୍ରକାଶିତ ହୋଇଯିବା ପରେ ସେ ଧୀରେ ଧୀରେ ସମାଲୋଚନା ରାଜ୍ୟରୁ ବିଦାୟ ନେଇଗଲେ । କିନ୍ତୁ ହେମନ୍ତ କୁମାର ଦାସ ଜଣେ ଜନ୍ମ-ସମାଲୋଚକ । ଓଡ଼ିଆ ନାଟକର ସମାଲୋଚନା । ଲେଖିବାକୁ ସେ ଏକ ଜାତୀୟ କର୍ତ୍ତବ୍ୟ ମନେ କରିଛଂତି । 'ଓଡ଼ିଆ ନାଟକର ଉଦ୍ଭବ ଓ ବିକାଶ' ସଂପର୍କିତ ଏକ ସୁଲିଖିତ ମହାନିବଂଧ ରଚନା ପରେ ସେ ସ୍ଥିରହୋଇ ରହିଯାଇ ନାହାନ୍ତି । ଏପର୍ଯନ୍ତ ସେ ଓଡ଼ିଆ ନାଟକର ପୂର୍ଣ୍ଣାଂଗ ଇତିହାସ ରଚନାରେ ବ୍ୟାପୃତ ରହିଛଂତି । ତାଂକର 'ଓଡ଼ିଆ ନାଟକର ବିକାଶଧାରା' ଶିରୋନାମାରେ ଚାରିଖଣ୍ଡ ନାଟ୍ୟ ଇତିହାସ ପୁସ୍ତକ ପ୍ରକାଶିତ ହୋଇଯାଇଛି । ଏଗୁଡ଼ିକରେ ସେ ସାଂପ୍ରତିକ କାଳ ପର୍ଯନ୍ତ ଲିଖିତ ନାଟକ ଓ ନାଟ୍ୟକାର, ନାଟ୍ୟ ଆନ୍ଦୋଳନ ଓ ନାଟ୍ୟ ପ୍ରବୃତ୍ତିର ବିସ୍ତୃତ ଇତିବୃତ୍ତ ପ୍ରଦାନ କରିଛନ୍ତି । 'ଓଡ଼ିଆ ଲୋକନାଟକ' (୧୯୮୩) ନାମକ ଗ୍ରନ୍ଥରେ ଓଡ଼ିଆ ଲୋକନାଟ୍ୟର ବିସ୍ତୃତ

ବିଚାର ଆଲୋଚନା ରହିଛି । ନାଟ୍ୟତତ୍ତ୍ୱ ଓ ଓଡ଼ିଆ ନାଟକ ସଂପର୍କିତ 'ଓଡ଼ିଆ ନାଟକର ଶିଳ୍ପ ଚେତନା', 'ଓଡ଼ିଆ ନାଟକର ରୂପବିଭାଗ', ପ୍ରଭୃତି ତାଂକର ଉଲ୍ଲେଖଯୋଗ୍ୟ ସୃଷ୍ଟି । ଫକୀର ମୋହନଂକ ଭାଷା ବ୍ୟବହାର କରି ଶ୍ରୀ ଦାସଂକ ବିଷୟରେ କୁହା ଯାଇପାରେ ଓଡ଼ିଆ ନାଟକକୁ ସେ ଦଶ ନଖରେ ବିଦାରି ପକାଇଛଂତି । ନୀଳାଦ୍ରିଭୂଷଣ ହରିଚଂଦନଙ୍କ 'ଓଡ଼ିଆ ନାଟକରେ ଇତିହାସର ପ୍ରତିଧ୍ୱନି'ରେ ୧୮୮୦ ରୁ ୧୯୭୦ ପର୍ଯନ୍ତ ଓଡ଼ିଆ ଐତିହାସିକ ନାଟକର ବିକାଶ ପର୍ଯ୍ୟାୟ ଆଲୋଚିତ । ଏଥିରେ ମୂଳତଃ ତଥ୍ୟାତ୍ମକ ଇତିହାସର ନାଟ୍ୟ ପ୍ରୟୋଗ ଉପରେ ଆଲୋକପାତ କରାଯାଇଛି । ଐତିହାସିକ ପୃଷ୍ଠଭୂମି ବିଶ୍ଳେଷଣ ଓ ତାତ୍ତ୍ୱିକ ବିବେଚନ ଏହାର ସ୍ୱାତନ୍ତ୍ର୍ୟ । ଏହାର ପରିଚ୍ଛେଦ ପରିକଳ୍ପନା ପାରଂପାରିକ ରୀତି ଠାରୁ ଭିନ୍ନ । ଶ୍ରୀ ହରିଚଂଦନ ମୂଳତଃ କବି ଓ ନାଟ୍ୟକାର ହେଲେ ମଧ୍ୟ ନାଟ୍ୟ ସମାଲୋଚନା କ୍ଷେତ୍ରରେ କୃତବିଦ୍ୟତା ପ୍ରଦର୍ଶନ କରିଛନ୍ତି । ସୃଜନଶୀଳତା ତାଂକର ସମାଲୋଚନାକୁ ସମୃଦ୍ଧ କରିଅଛି । 'ଆଧୁନିକ ଓଡ଼ିଆ ନାଟକରେ ବାସ୍ତବ ଓ ଉଦ୍ଭଟ ଚେତନା' (୧୯୮୮) ସର୍ବାଧୁନିକ ପ୍ରୟୋଗବାଦୀ ନାଟକର ଏକ ସ୍ୱୟଂସଂପୂର୍ଣ୍ଣ ଆଲୋଚନା । ଏହା ପ୍ରକାଶିତ ହୋଇ ବିମୂର୍ତ୍ତ ଓ ମୁକ୍ତଧାରାର ଓଡ଼ିଆ ନାଟକ ସଂପର୍କରେ ପ୍ରଚଳିତ ଭ୍ରାନ୍ତ ଧାରଣାକୁ ଦୂରୀଭୂତ କରିଛି । ନୂତନତାଧର୍ମୀ ନାଟକଗୁଡ଼ିକର ତାତ୍ତ୍ୱିକ ବିବେଚନରେ ଅନନ୍ୟତା ଯୋଗୁଁ ଏହା ବହୁ ନାଟ୍ୟକାର ତଥା ଓଡ଼ିଆ ଓ ଇଂରାଜୀ ଅଧ୍ୟାପକମାନଂକର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଅଛି । ଏହି ଗ୍ରନ୍ଥପାଇଁ ଶ୍ରୀ ହରିଚଂଦନ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଡ଼ି.ଲିଟ୍ ଉପାଧି ଲାଭ କରିଛଂତି । ଏତଦ୍ ବ୍ୟତୀତ ନାଟକ ସଂପର୍କରେ ତାଂକର 'ଐତିହାସିକ ନାଟକର ମୂଳସୂତ୍ର' (୧୯୮୦) 'ନୂତନ ନାଟ୍ୟଚିନ୍ତା' (୧୯୮୩) , 'ଓଡ଼ିଆ ନାଟକର ଇତିହାସ' (୧୯୮୯) Aspects of Oriya Drama (1992) ପ୍ରଭୃତି ପୁସ୍ତକ ପ୍ରକାଶିତ ହୋଇଛି । ତାଂକର ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ପୁସ୍ତକ 'ଭିନ୍ନ ସମୟ ଭିନ୍ନ ଦୃଷ୍ଟି' (୧୯୯୦) ର ଅଧିକାଂଶ ପ୍ରବଂଧ ଓଡ଼ିଆ ଲୋକନାଟକର ଭିନ୍ନ-ଦୃଷ୍ଟି ମୂଳକ ଆଲୋଚନା । ୟୁ.ଜି.ସି. କ୍ୟାରିଅର୍ ଆୱାର୍ଡ୍ ଆନୁକୂଲ୍ୟରେ ଓଡ଼ିଶାର ଲୋକନାଟ୍ୟ ଗବେଷଣାଲବ୍ଧ କେତେକ ନୂତନ ତଥ୍ୟ ଏହି ପ୍ରବଂଧଗୁଡ଼ିକରେ ପରିବେଷିତ ।

ଏକାକିଂକା ଓ ବେତାର ନାଟକ ସଂପର୍କରେ ଶ୍ରୀ ଗିରୀଶ ଚନ୍ଦ୍ର ମିଶ୍ରଂକ 'ଓଡ଼ିଆ ଏକାଂକିକାର ଧରା ଓ ଧାରା' (୧୯୮୧) ଓ ଜୟନ୍ତ କୁମାର ଦାସଂକ 'ଓଡ଼ିଆ ବେତାର ନାଟକ' (୧୯୮୭) ଦୁଇଟି ଉଲ୍ଲେଖଯୋଗ୍ୟ ଗ୍ରନ୍ଥ । ଓଡ଼ିଆ ସାହିତ୍ୟ ଏକାଡେମୀ 'ଆଧୁନିକ ଓଡ଼ିଆ ନାଟକ' ନାମରେ ଧୀରେନ୍ ଦାଶଂକର ଗୋଟିଏ ସମାଲୋଚନା ପୁସ୍ତକ ଏବଂ ଅନ୍ୟ ଗୋଟିଏ ଆଧୁନିକ ନାଟ୍ୟ ସମାଲୋଚନା ସଂକଳନ ପ୍ରକାଶ କରିଛଂତି ।

ସାଂପ୍ରତିକ ଓଡ଼ିଆ ନାଟକ ବିଷୟରେ ଇଂରାଜୀ ଅଧ୍ୟାପକ ନାଟ୍ୟକାର ରମେଶ ପ୍ରସାଦ ପାଣିଗ୍ରାହୀଂକର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ପ୍ରବଂଧଗୁଡ଼ିକ ଚିନ୍ତା ଉଦ୍ରେକକାରୀ । ଏଗୁଡ଼ିକ

ନାଟ୍ୟ ଆଲୋଚନା କ୍ଷେତ୍ରରେ ନୂତନ ଦିଗର ସଂଧାନ ଦେଇଥାଏ । ନୂତନ ନାଟକ ସଂପର୍କରେ ନାଟ୍ୟକାର ଅଧ୍ୟାପକ ବିଜୟ କୁମାର ଶତପଥୀଂକର 'ନୂତନ ମୂଲ୍ୟବୋଧର ନାଟକ' (୧୯୯୧) ଏକ ଉପାଦେୟ ଗ୍ରନ୍ଥ । ଏଥିରେ ଶ୍ରୀ ଶତପଥୀଂକ ବିଚାରଧାରା ସ୍ୱଷ୍ଟ ଓ ଯୁକ୍ତିସମ୍ମତ । ମନୋରଂଜନଂକ ଠାରୁ ଆରଂଭ କରି ନୀଳାଦ୍ରିଭୂଷଣ ହରିଚଂଦନଂକ ପର୍ଯନ୍ତ ନବ ଚେତନାଧର୍ମୀ ନାଟକ କ୍ଷେତ୍ରରେ ବକ୍ତବ୍ୟ ଓ ଶୈଳୀରେ ନୂତନତ୍ୱ ପ୍ରଦର୍ଶନ କରିଥିବା କେତେଜଣ ନିର୍ବାଚିତ ନାଟ୍ୟକାରଂକର ନାଟ୍ୟକୃତି ଏଥିରେ ଆଲୋଚିତ ।

ବଲାଂଗୀରର 'ଆମ୍ର ପ୍ରକାଶନୀ' ସଂସ୍ଥା ଏବଂ ସେକ୍ ମତଲୁବ୍ ଅଲ୍ଲୀ, ବୈଷ୍ଣବ ଚରଣ ସାମଲ ଓ ନାରାୟଣ ସାହୁ ପ୍ରମୁଖ ବିଭିନ୍ନ ନାଟ୍ୟସମାଲୋଚକମାନଙ୍କର ଲେଖାକୁ ଏକତ୍ର କରି ଏକ ଏକ ନିର୍ଦ୍ଦିଷ୍ଟ ବିଷୟରେ ସଂକଳନ ପ୍ରକାଶ କରିଛଂତି । ଏ ସଂପର୍କରେ 'ଆମ୍ର ପ୍ରକାଶନୀ'ର 'ଓଡ଼ିଆ ନାଟକ', 'ଶ୍ରୀ ଅଲିଂକ 'ଆଦି ନାଟ୍ୟକାର ଜଗନ୍ମୋହନ ଲାଲା', 'ଗଣକବି ବୈଷ୍ଣବ ପାଣି' ଶ୍ରୀ ସାମଲଂକର 'ଓଡ଼ିଆ ଯାତ୍ରା ଓ ଲୋକନାଟ୍ୟ ପରିକ୍ରମା', ଶ୍ରୀ ସାହୁଂକର 'ମନୋରଂଜନ ନାଟ୍ୟଦିଗନ୍ତ ', 'ନାଟ୍ୟକାର ଗୋପାଳ ଛୋଟରାୟ', 'ରାମଚନ୍ଦ୍ର ମିଶ୍ରଂକ ସ୍ରଷ୍ଟା ମାନସ' ପ୍ରଭୃତି ଉଲ୍ଲେଖଯୋଗ୍ୟ । କେତେକ ପ୍ରାଚୀନ ଲୋକନାଟକ ଓ ନାଟକ ସଂପାଦିତ ଓ ସଂକଳିତ ହୋଇ ନାଟ୍ୟାଲୋଚନା କ୍ଷେତ୍ରରେ ଏକ ଅଭାବ ପୂରଣ କରିଛି । ଶ୍ରୀ କୃଷ୍ଣ ଚରଣ ବେହେରାଂକ 'ମୋଗଲ ତାମସା' (୧.୯୬୬), ଶ୍ରୀ ଭଗବାନ ପଣ୍ଡାଙ୍କ 'ପ୍ରହ୍ଲାଦ ନାଟକ' (୧୯୭୩), ଶ୍ରୀ ଉପେନ୍ଦ୍ର ନାଥ ମହାନ୍ତିଂକ 'ବୀର ବିକ୍ରମ ନାଟକାବଳୀ' (୧୯୭୭), ହେମନ୍ତ କୁମାର ଦାସଂକ 'ସତୀ'ର ସଂପାଦନା ଓ ସଂକଳନ ପ୍ରଶଂସନୀୟ । ଏ ଭିତରେ ନାଟକର ତତ୍ତ୍ୱ, ସମୀକ୍ଷା, ଇତିହାସକୁ ନେଇ ସଂଘମିତ୍ରା ମିଶ୍ର, ଦୀନବଂଧୁ ଦାଶ, ଅରୁଣ ମହାନ୍ତି, ବୃନ୍ଦାବନ ଚନ୍ଦ୍ର ରଥ, ରବି ନାୟକ, କାଳିନ୍ଦୀ ବେହେରା ପ୍ରମୁଖ କେତେକ ପୁସ୍ତକ ରଚନା କରିଛଂତି ।

ଲକ୍ଷ୍ୟ କରିବାର କଥା ଯେ ଓଡ଼ିଆ ନାଟକ ରଚନା କ୍ଷେତ୍ରରେ ବର୍ତ୍ତମାନ ଯେପରି ସ୍ଥାଣୁତ୍ୱ ସୃଷ୍ଟି ହୋଇଛି, ନାଟକର ଆଲୋଚନା କ୍ଷେତ୍ରରେ ମଧ୍ୟ ଅନୁରୂପ ଅବସ୍ଥା ପରିଲକ୍ଷିତ ହେଉଛି । ଯେଉଁ କେତେଜଣ ନାଟ୍ୟ ସମାଲୋଚକ ଅତୀତରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ, ସେମାନେ ପ୍ରାୟ ସ୍ଥିର, ନିଶ୍ଚିନ୍ତ ହୋଇ ଯାଉଛଂନ୍ତି । ନୂତନ ନାଟକର ଉପଯୁକ୍ତ ସମୀକ୍ଷା କରିବା ଭଳି ନୂଆ ସମାଲୋଚକଂକୁ ଦେଖିବାକୁ ମିଳୁନାହିଁ । ଏକଥା ସତ୍ୟ ଯେ ନୂତନ ଦୃଷ୍ଟିଦାନ ସମର୍ଥ ସର୍ଜନଶୀଳ ଲେଖକମାନେ ସମାଲୋଚନା କ୍ଷେତ୍ରରେ ବେଶିଦିନ ରହି ପାରିବେ ନାହିଁ, ମୌଳିକ ସୃଷ୍ଟି କ୍ଷେତ୍ରକୁ ଫେରିଯିବେ । ସୃଷ୍ଟିରେ ବ୍ୟାପ୍ତି ଓ ବୈଚିତ୍ର୍ୟ ପ୍ରକଟିତ ହେବା ସଂଗେ ସଂଗେ କେତେକ ପ୍ରତିଭାଧର ନାଟ୍ୟ-ସମାଲୋଚକଂକର ଅଭ୍ୟୁଦୟ ନିଶ୍ଚିୟ ଘଟିବ ।

ପ୍ରଫେସର, ଓଡ଼ିଆ ବିଭାଗ,
ବିଶ୍ୱଭାରତୀ, ଶାନ୍ତିନିକେତନ



# ଓଡ଼ିଆ ଗଳ୍ପ : ଚର୍ଚ୍ଚାର ବିଚିତ୍ରା

## କଇଳାଶ ପଟ୍ଟନାୟକ

ଗଳ୍ପଟିଏ ପଢ଼ିଲା ଉତ୍ତାରୁ ସାଧାରଣତଃ ଦୁଇଟି ଧାରଣା ଆସେ, ଭଲ ବା ଖରାପ ; କିନ୍ତୁ କାହିଁକି ଭଲ ବା ଖରାପ ହେଇଛି, ସେ କାରଣକୁ ଜାଣିବାକୁ ସାଧାରଣ ପାଠକ ଆଉଟିପାଉଟି ହୁଏନାଇଁ । ଏମିତି ହୋଇଥିଲେ ଭଲ ହେଇଥାନ୍ତାକି ଏଇ କାରଣରୁ ଏତେ ସୁନ୍ଦର ବୋଲି ସାଧାରଣ ଗଣନାରେ ସେ ନିଜକୁ ସନ୍ତୁଷ୍ଟ ରଖିଥାଏ । ଗଳ୍ପର ପଦ୍ମଫୁଲ ତାର ପାଦେ ପାଦେ ପାଣିରେ ଯେମିତି ଦିଶିଲା ସେ କହିଲା, ତାର ସ୍ୱରୂପ ଉନ୍ମୋଚନ କରିବାକୁ, ତାହା ଶତଦଳ ନା ଷଟ୍‌ଦଳ ତାର ପରୀକ୍ଷାକରିବାକୁ ପଦ୍ମପାଖକୁ ଯିବା ଲାଗି ଆଣ୍ଠୁଏ ଆଣ୍ଠୁଏ ପାଣି, ଜଂଘେ ଜଂଘେ ପାଣି, ଅଣ୍ଟାଏ ଅଣ୍ଟାଏ ପାଣି.. ହବାକୁ ତାର ନ ଥାଏ ଆଗ୍ରହ ନା ଧୈର୍ଯ୍ୟ - ସେ ଭଲମଂଦର ସାଧାରଣ ତଉଲରେ ଗଳ୍ପଟି ତଉଲି ସନ୍ତୁଷ୍ଟ ଥାଏ । ହେଲେ ସଭିଏଁତ ସାଧାରଣ ପାଠକ ନୁହନ୍ତି, ଥାଆନ୍ତିବି କେହିକେହି ବେକେ ବେକେ ପାଣିର ଅବସ୍ଥିତିରେ ସୁଦ୍ଧାବିଚଳିତ ନ ହୋଇ ପଦ୍ମର ସ୍ୱରୂପ ସଂଧାନ କରୁକରୁ ସଂଧାନ ପାଆନ୍ତି କ୍ରୂରମତି କୁମ୍ଭୀରର । ସେହିଁ ସତ୍ୟ । ଗଳ୍ପ-ପଦ୍ମଫୁଲର ସ୍ୱରୂପ ସହ ଯେ ସଂପୃକ୍ତ । ସେ ଗଳ୍ପର ମର୍ମ । ବେକେ ବେକେ ପାଣିରେବି ବିଚଳିତ ହେଉନଥିବା ପାରଙ୍ଗମ ପରୀକ୍ଷକମାନେହିଁ ଅସଲ ଚିହ୍ନରା । ସେମାନେ ଜାଣନ୍ତି ଗଳ୍ପର ମର୍ମ ଉଦ୍‌ଘାଟନର ଭେଦସବୁ । କୁମ୍ଭୀରକୁ ଦେଖି ଅନ୍ୟକୁ ଦେଖାଇବାର ବାଗ ।

ଗଳ୍ପ ପଢ଼ି ତାର ଭାବ କି ରୂପର ଦିଗଦିଗନ୍ତର ସଂଧାନ ଦବାର ବିଧି ଆରମ୍ଭ ହେଇଚି ଗଳ୍ପଲେଖାର ବହୁପରେ । ପ୍ରଥମେ ସାହିତ୍ୟ ଲେଖାହେଲେତ ବ୍ୟାକରଣଟିଏ ତିଆରିହେବ । ଶ୍ଳୋକ ରଚିତ ହେଲାପରେ ସିନା ଆସିବ ଛନ୍ଦଜିଜ୍ଞାସା ! ରେବତୀର ପ୍ରକାଶନ ପରେ ପରେ ଗଳ୍ପର ଆଲୋଚନାଭାବେ ଆମ ପାଖକୁ ଯାହା ଆସିଥିଲା, ତାହା ଥିଲା ଏକ ଶୃଙ୍ଖଳିତ ନିୟମବଦ୍ଧ ଆଲୋଚନାର ପ୍ରସ୍ତୁତିପର୍ବ । ପାଶ୍ଚାତ୍ୟର ଏ ନବୀନ ଶିଳ୍ପରୂପର ସମାଲୋଚନା ପ୍ରତି ଆମର ବୁଦ୍ଧିଜୀବୀଗଣଙ୍କ ଦୃଷ୍ଟି ଆକୃଷ୍ଟ ହୋଇନଥିଲା । ଓଡ଼ିଆ ପରଂପରାରେ ମଧ୍ୟ ଅନୁରୂପ ସୃଜନଶୀଳତାର ସମୀକ୍ଷାର ସଂହିତା ନଥିଲା । ଅତଏବ ପ୍ରାକ୍‌କାଳର ଓଡ଼ିଆଗଳ୍ପ-ସମୀକ୍ଷା ଥିଲା ପ୍ରକୃତପକ୍ଷେ ଗଳ୍ପବୀକ୍ଷାର ପ୍ରସ୍ତୁତି ପର୍ବ ।

ଏଇ ପ୍ରସ୍ତୁତିପର୍ବର ରୂପକାର ମଧ୍ୟ ଆଶ୍ଚର୍ଯ୍ୟର କଥା, ଥିଲେ 'ଶ୍ରୀ' ଛଦ୍ମନାମରେ ଫକୀରମୋହନ । 'ରେବତୀ' ପ୍ରକାଶପାଇଥିଲା ଉତ୍କଳସାହିତ୍ୟ ପତ୍ରିକାର ଦ୍ୱିତୀୟବର୍ଷର ଦଶମ ସଂଖ୍ୟାରେ, ଅକ୍ଟୋବର ୧୮୯୮ ମସିହାରେ । ତାର ତିନିମାସପରେ ଏହି ପତ୍ରିକାର ତୃତୀୟବର୍ଷ ପ୍ରଥମ ସଂଖ୍ୟାରେ 'ସମାଲୋଚନା' ଶୀର୍ଷକରେ ମୋହନ ଓ ଶଙ୍କରଙ୍କ କଥୋପକଥନ ଲିପିବଦ୍ଧ ହୋଇଛି । ସେମାନଙ୍କ କଥୋପକଥନର କେନ୍ଦ୍ରବିନ୍ଦୁ ହରିହରପୁର ପାଟପୁରର ଶ୍ୟାମବଂଧୁ ମହାନ୍ତିଙ୍କ

'ଦୁଇତିନିମାସିଆ ଝିଅ' ରେବତୀ । ଦୁଇତିନିମାସିଆ କାହିଁକି ନା 'ରେବତୀ'ର ପ୍ରକାଶନ ସେତେବେଳକୁ ମାତ୍ର ତିନିମାସର ପୁରୁଣା । 'ଶ୍ରୀ' ଙ୍କୁ ଫକୀରମୋହନ ବୋଲି ବିଶ୍ୱାସ କରିବାର କାରଣ -

କ) 'ଶ୍ରୀ' ଫକୀରମୋହନଙ୍କର ଅନ୍ୟତମ ପରିଚିତ ଛଦ୍ମନାମ ।

ଖ) ଫକୀରମୋହନଙ୍କ 'ଦକ୍ଷିଣପଥଯାତ୍ରା'ର ସୂଚନା ଏଥିରେ ଉପଲଭ୍ୟ । ରଚନାର ପ୍ରାୟ ବର୍ଷେପରେ କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ଫକୀରମୋହନ ମାନ୍ଦ୍ରାଜ ଯାଇଥିଲେ । ଏ ପୂର୍ବଯୋଜନା ଅନ୍ୟ କୌଣସି 'ଶ୍ରୀ' ଜାଣିପାରନ୍ତି, ଉଲ୍ଲେଖକରିବା କଷ୍ଟକର ।

ଗ) କଥୋପକଥନସ୍ଥ ବାକ୍‌ବୈଦଗ୍ଧ୍ୟ, ବ୍ୟାଜଗାମ୍ଭୀର୍ଯ୍ୟ ଆଦି ଫକୀରମୋହନଙ୍କ ଶୈଳୀକୁ ସ୍ମରଣ କରାଏ ।

ଘ) ଯେଉଁ ବ୍ୟକ୍ତି ଆପଣାର ମୂର୍ତ୍ତି ନିର୍ମାଣ କରାଇପାରେ ଯୁବକାବସ୍ଥାରେ, ନିଜ ନାମରେ ଯେ ଚଳାଇପାରେ ବାଲେଶ୍ୱର ଜିଲ୍ଲାସ୍କୁଲରେ ସୁନାମେଡ଼ାଲ, ସେ ବ୍ୟକ୍ତି ନିଜ ଗଳ୍ପର ସୃଜନଶୀଳ ସମୀକ୍ଷାଟିଏ ଲେଖିବା ଅସମ୍ଭବ ନୁହେଁ ।

'ଗଳ୍ପ' ଭାବେ 'ରେବତୀ'ର ଅନୁଭବକୁ ତାଙ୍କର ମୁହଁରେ କୁହାଯାଇଛି, 'ଏତ ଦଣ୍ଡକେ ସରିଗଲା' । ଗଳ୍ପ ସହିତ ଅନଭ୍ୟସ୍ତ ପାଠକଙ୍କ ମୁହଁରେ ଆଉ କଣବା ଅନୁଭବ ଆସିଥାଆନ୍ତା ନୂଆ ନୂଆ ଗଳ୍ପ ପଢ଼ି ? ସ୍କଟଙ୍କ 'ରେବେକା' ବା ବଙ୍କିମଙ୍କ 'ଦୁର୍ଗେଶନନ୍ଦିନୀ'ପରି ଉପନ୍ୟାସର ତଉଲରେ ତଉଲି ଗଳ୍ପକୁ ଦେଖିବାର ସ୍ୱାଭାବିକ ଧାରାକୁ ଶଙ୍କର କେମିତି ନମାନିଥାଆନ୍ତା ? ତେଣୁ 'ଦଣ୍ଡକେ'ସରିଯିବାରୁ' ହତାଶା ତାକୁ ମାଡ଼ିବସିଚି । ଏକଥାର ଉତ୍ତରରେ ମୋହନ ଲେଖକଙ୍କ ପକ୍ଷନେଇ କହିଚି, ରେବୀ ପ୍ରତି ସାଧାରଣଙ୍କ ଆଦର ଦେଖିଲେ ଆଉ ଆଉ ଗପକରି ରେବୀର ଭାଇଭଉଣୀ ଗୁଡ଼ିକୁ ପଦାକୁ ବାହାର କରିବେ । ଅର୍ଥାତ୍ ପାଠକୀୟ ଉତ୍ସାହ ଓ ସମର୍ଥନ ପାଇ ଫକୀରମୋହନ ଆଶାୟୀ । ହୁଏତ ଏଇ ସମର୍ଥନ ପାଇ ପରବର୍ତ୍ତୀକାଳରେ ଗଳ୍ପଲେଖାର ଯେଉଁ ଭିତ୍ତି ସେ ଓ ତାଙ୍କର ଅପରାପର ଅନୁଗାମୀମାନେ ସୃଷ୍ଟିକଲେ, ତାପରେ ଆଉ 'ଏ ତ ଦଣ୍ଡକେ ସରିଗଲା', କହିବାର କ୍ଷୋଭ କାହାରି ରହିଲାନାହିଁ, ରହିଲାନାହିଁ ବି ଉପନ୍ୟାସ ସହିତ ଗଳ୍ପକୁ ତଉଲିବାର ଅନାବଶ୍ୟକ ଆଗ୍ରହ ।

'ରେବତୀ' ଅନୁଶୀଳନବେଳେ ଜଣେ ସାଧାରଣ ପାଠକ ମନରେ ଯେଉଁ ପ୍ରଶ୍ନ ଏବେବି ଉଠେ ତାହା ଶଙ୍କର ମୁହଁରେ କଥିତ 'ଆଚ୍ଛା ସବୁଗୁଡ଼ାକ ମାରିପକାଇଲେ କାହିଁକି ?'ର ଉତ୍ତର ଦିଏ ମୋହନ କେଉଁ ଭୋବନୀ ବିଶ୍ୱାଳ ଘରେ ସାତପ୍ରାଣୀ ଦିନକରେ ଓଲାଉଠାରେ ମରିଥିବାର

ନକିରଦେଇ । ଶିଳ୍ପକଳାର ତର୍କଣାକୁ ଲଘୁଭାବେ ଏଡ଼ାଇବାର ଏ ପ୍ରୟାସରେ ଶଙ୍କର ଭୁଲି ଯାଇନାହିଁ । ପୁଣି ପ୍ରଶ୍ନକରିଚି, 'ରେବତୀର କିଦୋଷଯେ ମଲା ? ବାସୁଦେବତ ବଡ଼ ନିରୀହ ଲୋକ' କହିବାର ଉତ୍ତରରେ ତତ୍କାଳୀନ କେତେଜଣ ସୁନାମଖ୍ୟାତ ଶିକ୍ଷାବିତ୍‌ଙ୍କ ପ୍ରସଙ୍ଗ ଆସିଚି, ଯାହା ଗଳ୍ପ ଆଲୋଚନାରେ ଆରୋପକରିଚି ଅପ୍ରାସଙ୍ଗିକତା । ଏଥିସହ ଲେଖକ ପ୍ରାଚୀନତାପ୍ରିୟ ଓ ଅନୁଦାରର ଉତ୍ତରରେ ମୋହନ ମଧ୍ୟ ଲେଖକଙ୍କୁ 'ମୁଣ୍ଡବାଳ ଗୋଟିଏ ଗୋଟିଏ ପାଚି ଆସିଲାଣି' କହି ପ୍ରାଚୀନତାପ୍ରିୟତାର ତଥା ତାଙ୍କର ଦାର (ପତ୍ନୀ) ନାହିଁ ବୋଲି କୁହାଯାଇ ଅନୁଦାରତାର ବିନୋଦିଆ ତର୍ଜମା କରିଚି । କଥୋପକଥନକୁ ଏସବୁ ରସାଳ ଓ ମଧୁର କରୁଥାଇପାରେ, ପାଠକଙ୍କୁ ଆହ୍ଲାଦ ଦେଉଥାଇପାରେ, କିନ୍ତୁ ପ୍ରକୃତପକ୍ଷେ ଶିଳ୍ପଚର୍ଚ୍ଚାର ପ୍ରାସଙ୍ଗିକତା ଓ ଶୃଙ୍ଖଳାରୁ ଏହା କ୍ରମଶଃ ଦୂରେଇ ଚାଲିଯାଇଚି । ଓଡ଼ିଆଗଳ୍ପ-ଆଲୋଚନାର ଆଦିରୂପ ଭାବେ ଏ ଦୁର୍ବଳତାଗୁଡ଼ିକ ଗ୍ରହଣ କରିନେବାବେଳେ ଫକୀରମୋହନଙ୍କ ସ୍ୱଭାବସୁଲଭ ବାକ୍‌ଭଙ୍ଗୀର ଦ୍ୱାହିରେ ଏହାଏକ ସ୍ୱାଭାବିକ ଶୈଳୀଭାବେ ଅନେକେ ଗ୍ରହଣ କରିବେ । ମାତ୍ର ମନେରଖିବାକୁ ହେବ ଫକୀରମୋହନୀୟ ବାକ୍‌ଭଙ୍ଗୀର ବୈଶିଷ୍ଟ୍ୟ ହେଉଚି ବିନୋଦସହ ବକ୍ତବ୍ୟର ମଧୁର ସମନ୍ୱୟ, ଏପରି ସମନ୍ୱୟ ଏଇ ଲେଖାଟିରେ ନାହିଁ । ଫକୀରମୋହନ ସାମାଜିକ ଭାବେ ଏ ଲେଖାରେ ଗଳ୍ପ ଅପେକ୍ଷା ତାର ସ୍ରଷ୍ଟା, ଅର୍ଥାତ୍ ନିଜ ସଂପର୍କରେ ଅଧିକ ମୁଖର । ଯେପରି-

କ) ରେବତୀ ବାପା ଗସ୍ତକରିବାବାଲା

ଖ) ସେ ଓଡ଼ିଆ ବାଲ୍ମିକୀ

ଗ) ରେବତୀ ବାପାବି ବାଲେଶରିଆ । ତାଙ୍କ ଘର ଗୁପାଳପୁରର ଦକ୍ଷିଣ ଆଡ଼କୁ । ଗୁଡ଼ିପୁଖରୀ ନିକଟରେ, ଗୁବିନ୍ଦବାବୁଙ୍କର ତାଙ୍କର ଭାରି ଭାବ ।

ଘ) ତାଙ୍କ ମୁଣ୍ଡବାଳ ଗୋଟିଏ ଗୋଟିଏ ପାଚି ଆସିଲାଣି । ଲେଖନଟାବି ପାଚି ଆସିଲାଣି, ଆଉ ତାଙ୍କର ଦାର ନାହିଁ ।

ଏଇ ମୁଖରତା ଲାଗି ରେବତୀକୁ ଏକ ମାଧ୍ୟମଭାବେ ସେ କେବଳ ଗ୍ରହଣ କରିଛନ୍ତି । 'ରେବତୀ'ର ସମାଲୋଚନା ଅପେକ୍ଷା ଏଠି ତେଣୁ ଫକୀରମୋହନଙ୍କ ପ୍ରଶଂସା ଅଧିକ ଉତ୍କୀର୍ଣ୍ଣ ।

'ଉତ୍କଳସାହିତ୍ୟ'ର ଯେଉଁ ସଂଖ୍ୟାରେ ଗଳ୍ପ ସଂପର୍କୀୟ ଏହି ପ୍ରଥମ ରଚନାଟି ପ୍ରକାଶିତ, ଠିକ ସେଇ ସଂଖ୍ୟାରେ କୌତୂହଳର ବିଷୟ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଲୋକକାହାଣୀ ସଂପର୍କୀୟ ପ୍ରଥମ ଆଲୋଚନା ମଧ୍ୟ ପ୍ରକାଶିତ । ଏ ଦିହେଁ ଯେମିତି ଏକ ଆଶ୍ଚର୍ଯ୍ୟ ସଂଯୋଗର ଫଳ । ପ୍ରହରାଜଙ୍କ 'ଉତ୍କଳଦେଶର କାହାଣୀ' ଶୀର୍ଷକର ଲେଖା ଲୋକକାହାଣୀର ସୃଷ୍ଟିପ୍ରକ୍ରିୟାରେ ନାରୀମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସ୍ୱୀକାରକରି ଏହାର ମୁଦ୍ରଣକାଳରେ ପରିମାର୍ଜନା ନ କରିବାର ପରାମର୍ଶ ଦେଇଚନ୍ତି; କାରଣ ଏହାଦ୍ୱାରା ଏଗୁଡ଼ିକର 'ଅକୃତ୍ରିମ ମନୋହାରିତ୍ୱ ଓ ସରସତା'ରେ ବାଧାପଡ଼େ । ପରବର୍ତ୍ତୀ ସମୟରେ ପ୍ରହରାଜ ନିଜ ସଂଗୃହୀତ ଲୋକକାହାଣୀ ଗୁଡ଼ିକର ସଂକଳନ

ଉତ୍କଳ କାହାଣୀର ମୁଖବନ୍ଧରୂପେ ଏହି ଆଲୋଚନାକୁ ଗ୍ରଥିତକରି ଶେଷରେ ଅନ୍ୟଏକ ଅନୁଚ୍ଛେଦ ଯୋଗକରି ଲୋକକାହାଣୀର ଦ୍ୱିବିଧଭେଦକୁ ସୂଚିତ କରିଥିଲେ-କାଳୋପଯୋଗୀ ଓ ବୃଦ୍ଧୋପଯୋଗୀ ଲୋକକାହାଣୀ । ଏହି ଆଲୋଚନାର ତିନିବର୍ଷପରେ ଉତ୍କଳସାହିତ୍ୟର ଷଷ୍ଠବର୍ଷ ପ୍ରଥମସଂଖ୍ୟାରୁ ଚତୁର୍ଥ ସଂଖ୍ୟା, ବୈଶାଖ-ଶ୍ରାବଣ ମଧ୍ୟରେ ମୋହିନୀମୋହନ ସେନାପତିଙ୍କ 'ଓଡ଼ିଆ କାହାଣୀ' ନାମକ ଆଲୋଚନା ଧାରାବାହିକ ପ୍ରକାଶିତହୁଏ । ଏଥିରେ ପ୍ରହରାଜଙ୍କ ଲୋକକାହାଣୀ ସୃଷ୍ଟିରେ ନାରୀମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଅସ୍ୱୀକାର କରାଯାଇ Andrew Lang ଙ୍କ Genesis theory ଭିତ୍ତିରେ କାହାଣୀ ସୃଷ୍ଟିରେ ମାନବିକ କଳ୍ପନା ଓ ସୌନ୍ଦର୍ଯ୍ୟପିପାସାକୁ ସ୍ୱୀକାର କରାଯାଇଛି । ସମାନ ବାହ୍ୟ ପ୍ରଭାବର ସମାନ ଫଳ ଭେଦରେ ପ୍ରାୟତଃ ଏକ ପ୍ରକାର କାହାଣୀ ପୃଥିବୀର ବିବିଧ ଦେଶରେ ଗଢ଼ିଉଠିଥିବା ତଥ୍ୟକୁ ମୋହିନୀମୋହନ ସ୍ୱୀକାର କଲେ ଓ ମତଦେଲେ, 'ପୃଥିବୀର ଆଦିମକାଳରୁ ମନୁଷ୍ୟବୁଝିଅଛି ଯେ ସୌନ୍ଦର୍ଯ୍ୟ ପିପାସା କେବଳ ଯେ ଉତ୍କଳ କାହାଣୀର ମାତା ତାହାନୁହେଁ, କିନ୍ତୁ ଏହା ସର୍ବଦେଶର କଳ୍ପନାସମ୍ଭୂତ ଗାଳ ଗଳ୍ପ କାବ୍ୟ ପ୍ରଭୃତିର ଜନନୀ ' ପ୍ରହରାଜଙ୍କ ଆଲୋଚନାର ସୃଜନପ୍ରକ୍ରିୟା ସଂପର୍କିତ ଦିଗଟି ମୋହିନୀମୋହନଙ୍କ ଦ୍ୱାରା ଅଧିକତର ବିଜ୍ଞାନସମ୍ମତ ହୋଇ ସତ୍ୟର ନିକଟତମ ହୋଇପାରିଛି । ବିଂଶ ଶତାବ୍ଦୀର ପ୍ରାକ୍‌କାଳର ଏହିଦୁଇଟି ଆଲୋଚନା ଲୋକକାହାଣୀର ଦୁଇଟି ଦୁର୍ଲ୍ଲଭ ଓ ତାତ୍ପର୍ଯ୍ୟପୂର୍ଣ୍ଣ ଆଲୋଚନା ।

ଲୋକକାହାଣୀ ସଂପର୍କିତ ଏସବୁ ଆଲୋଚନା ହେବାବେଳେ ଓଡ଼ିଶାରେ ଲେଖାହୋଇଚି ମୁଷ୍ଟିମେୟଗଳ୍ପ । ଗଳ୍ପ ଓ ଲୋକକାହାଣୀସ୍ଥ ଭେଦରେଖା ଟଣାହୋଇନାହିଁ । କାହାଣୀର କୁକ୍ଷିଗତ ହେଇଚି ଗଳ୍ପ । ମୋହିନୀମୋହନ ନିଜ ଆଲୋଚନାରେ ସେଇଥିଲାଗିତ ଉପନ୍ୟାସ ସହ ତୁଳନା କରିଚନ୍ତି କାହାଣୀର, ଅର୍ଥାତ୍ ଗଳ୍ପର । ଏ ପରିସ୍ଥିତିରେ ଗଳ୍ପସମୀକ୍ଷା ପ୍ରସଙ୍ଗରେ ଲୋକକାହାଣୀର ସମୀକ୍ଷା ଆଲୋଚିତ ହେବା ସ୍ୱାଭାବିକ । ଏମିତି ସ୍ଥିତି କିନ୍ତୁ ରହିଲାନାହିଁ ବେଶିଦିନ । ଲୋକକାହାଣୀ ଓ ଗଳ୍ପର ପାର୍ଥକ୍ୟ ଧୀରେ ଧୀରେ ସ୍ପଷ୍ଟ ହେବାକୁ ଲାଗିଲା । ମୋହିନୀମୋହନଙ୍କ ଲେଖା ପ୍ରକାଶିତ ହେବାର ଠିକ ଦୁଇବର୍ଷପରେ 'ଉତ୍କଳ ସାହିତ୍ୟ'ର ଅଷ୍ଟମବର୍ଷ ପ୍ରଥମସଂଖ୍ୟା, ବୈଶାଖ ୧୩୧୧ ସାଲ ବା ଅପ୍ରେଲ ୧୯୦୪ ସଂଖ୍ୟାରେ ଚନ୍ଦ୍ରଶେଖର ନନ୍ଦ, ସେ ସମୟର ଅନ୍ୟତମ ଗାଳ୍ପିକଙ୍କ ଗଳ୍ପ ସଂପର୍କୀୟ ପ୍ରଥମ ପ୍ରକୃତ ଆଲୋଚନାଟି ପ୍ରକାଶ ପାଇଥିଲା, 'ସାହିତ୍ୟରେ କ୍ଷୁଦ୍ରଗଳ୍ପ', ନାମରେ ସଂକ୍ଷିପ୍ତ ଏ ପ୍ରବନ୍ଧରେ ଉପନ୍ୟାସ ଓ ଗଳ୍ପ ମଧ୍ୟସ୍ଥ ଭେଦକୁ ସୂଚାଇ ଆଲୋଚକ ପ୍ରକୃଷ୍ଟ ଗଳ୍ପର ନିମ୍ନ ଲକ୍ଷଣାବଳୀ ସ୍ଥିରକରିଛନ୍ତି :

କ) କ୍ଷୁଦ୍ରଗଳ୍ପରେ ସଂକ୍ଷିପ୍ତତା ଅତ୍ୟନ୍ତ ଉପାଦେୟ ।

ଖ) ଗଳ୍ପର 'ପୁନଃ ପୁନଃ ଆବୃତ୍ତିକରି ପ୍ରୟୋଜନୀୟ ପରିବର୍ତ୍ତନ ଓ ସଂଶୋଧନ' ବାଞ୍ଛନୀୟ ।

ଗ) ଅତର୍କିତ ଆରମ୍ଭ ଓ ଆକସ୍ମିକ ପରିସମାପ୍ତି କ୍ଷୁଦ୍ରଗଳ୍ପରେ ସୌନ୍ଦର୍ଯ୍ୟର ମାତ୍ରା ବିଶେଷ ବଢ଼ାଇଦିଏ ।

ଘ) ଭାବର ଉଚ୍ଚତା, ଭାଷାର ଲାଳିତ୍ୟ, ରଚନାର ନୈପୁଣ୍ୟର ଏକତ୍ର ସମାବେଶ କ୍ଷୁଦ୍ରଗଳ୍ପରେ ଏକତ୍ର ଆବଶ୍ୟକ ।

ଓଡ଼ିଆ ସାହିତ୍ୟରେ ଚନ୍ଦ୍ରଶେଖରହିଁ ସର୍ବପ୍ରଥମେ ଗଳ୍ପର ବ୍ୟାକରଣ ପ୍ରସ୍ତୁତ କଲେ । ଏହା କେବଳ ଗଳ୍ପସଂପର୍କିତ ପ୍ରକୃତ ଆଲୋଚନା ନଥିଲା, ଥିଲା ପ୍ରକୃଷ୍ଟ ଆଲୋଚନାଟିଏ । ଗଳ୍ପରଚନାର ପ୍ରାକ୍ ପର୍ବରେ ଏପରି ଆଲୋଚନା ରଚନାକାରଙ୍କ ଦୃଷ୍ଟିଭଙ୍ଗୀକୁ ପ୍ରସାରିତ କରିବାରେ ସାହାଯ୍ୟ କରିଥିବ । ପ୍ରକୃତ ଗଳ୍ପଚର୍ଚ୍ଚାର ପ୍ରଥମ ସୂତ୍ରଧରଭାବେ ଚନ୍ଦ୍ରଶେଖର ତେଣୁ ସ୍ମର୍ତ୍ତବ୍ୟ ।

ବିଂଶଶତାବ୍ଦୀର ପ୍ରକ୍‌କାଳରେ ମୌଳିକ ଗଳ୍ପବ୍ୟତୀତ ବହୁ ଅନୂଦିତ ଗଳ୍ପ ମଧ୍ୟ ପ୍ରକାଶିତ ହେଉଥିଲା । ପ୍ରତିଭା ଦେବୀ, ନର୍ମଦା ଦେବୀଙ୍କ ଭାଷାନ୍ତରିତ ଗଳ୍ପମାନଙ୍କର ସଂକଳନ ମଧ୍ୟ ପ୍ରକାଶିତ । ପ୍ରତିଭା ଦେବୀଙ୍କ ଇଂରେଜୀ, ଫରାସୀ ଓ ଋଷୀୟ ଗଳ୍ପମାନଙ୍କର ଓଡ଼ିଆ ଭାଷାନ୍ତରିତ ରୂପ ସଂକଳିତ ହୋଇ ପ୍ରକାଶପାଏ 'ବିଦେଶୀ' ନାମରେ ୧୯୨୬ ମସିହାରେ । ଏହି ସଂକଳନର ଭୂମିକାରେ ତତ୍‌କାଳୀନ ବୁଦ୍ଧିଜୀବୀ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଅନୁବାଦ-ଗଳ୍ପର ଚୟନଗତ ସତର୍କତା ପ୍ରତି ଦୃଷ୍ଟି ଆକର୍ଷଣ କରାଇ ଅନୁବାଦଗଳ୍ପର ଶିଳ୍ପକର୍ମ ସଂପର୍କରେ ମଧ୍ୟ ସଚେତନତା ଆନୟନର ଚେଷ୍ଟା ପ୍ରଶଂସନୀୟ । ଓଡ଼ିଆଗଳ୍ପ ଆଲୋଚନାରେ ଏହି ଭୂମିକାର ଅବଦାନ ଏହାର ଭୂମିଗତ ସ୍ୱାତନ୍ତ୍ର୍ୟ ଓ ବକ୍ତବ୍ୟଗତ ବୈଶିଷ୍ଟ୍ୟ ପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ । ଗୋପାଳଚନ୍ଦ୍ରଙ୍କୁ କୀୟଦଂଶରେ ଉଦ୍ଧାରକରାଯାଇ ଏକଥାକୁ ଅଧିକଭାବେ ବୁଝାଇ ଦିଆଯାଇପାରେ :

'ଅଧିକାଂଶ ସ୍ଥଳରେ ମୌଳିକଗଳ୍ପରେ ଥିବା ନାମମାନଙ୍କୁ ଆମଦେଶ ପ୍ରଚଳିତ ନାମରେ ପରିବର୍ତ୍ତିତ କରି ଏ ଗଳ୍ପଗୁଡ଼ିକ ଲେଖାହୋଇଅଛି । ××× ସାହିତ୍ୟର ଉନ୍ନତିପାଇଁ ମୌଳିକ ପ୍ରତିଭା ବିକାଶ ଅବଶ୍ୟ ଲୋଡ଼ା, କିନ୍ତୁ ଅପର ସାହିତ୍ୟରେ ସଞ୍ଚିତ ରତ୍ନମାନ ଆହରଣ କରି ସାହିତ୍ୟର ଶ୍ରୀ ବୃଦ୍ଧି କରିବା ମଧ୍ୟ ସାହିତ୍ୟର ପରିପୁଷ୍ଟି ପାଇଁ ବିଶେଷରୂପେ ଆବଶ୍ୟକ । ××× ଅପରସାହିତ୍ୟରୁ ଗଳ୍ପ ଆଦି ଅବିକଳ ଅନୁବାଦ କରିବାରେ ତେତେ ବାହାଦୁରୀ ନାହିଁ । ଗଳ୍ପମାନ ନିର୍ବାଚନା କରିବା ଓ ଉକ୍ତ ଗଳ୍ପମାନଙ୍କୁ ଆମ ସାହିତ୍ୟର ରୁଚି ଓ ରୀତିରେ ଗଢ଼ିବାରେ କୃତିତ୍ୱ ଅଛି । ସାଧାରଣଙ୍କ ସମ୍ମୁଖରେ ଉଚ୍ଚ ଆଦର୍ଶ ସ୍ଥାପନକରି ଜାତୀୟଜୀବନକୁ ନୈତିକ ଓ ମାନସିକ ଉନ୍ନତି ଆଡ଼କୁ ଆକର୍ଷଣକରିବା ଉଚ୍ଚସାହିତ୍ୟର ଗୋଟିଏ ପ୍ରଧାନ ଓ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଅଟେ । ଅଧିକାଂଶ ସ୍ଥଳରେ ଦେଖାଯାଏ ଯେ, ଆମଦେଶର ଲେଖକ ଓ ଅନୁବାଦକମାନେ ଏକଥା ମନେରଖନ୍ତି ନାହିଁ ଏବଂ ଏହାର ଫଳରେ ସାହିତ୍ୟ ଆବର୍ଜନାପୂର୍ଣ୍ଣ ହେବା ସ୍ୱାଭାବିକ । ××× ଗଳ୍ପଗୁଡ଼ିକ ('ବିଦେଶୀ' ସଂକଳନସ୍ଥ) ପାଠକଲେ ଦେଖାଯିବଯେ ପତ୍ୟେକଗଳ୍ପମଧ୍ୟରେ ପବିତ୍ରମାଧୁରୀ ନିହିତ ଅଛି ଓ ସେଗୁଡ଼ିକ ପାଠକରିସାରି ପାଠକର ମନରେ ଉଚ୍ଚ ଆଦର୍ଶ ଓ ପବିତ୍ର ଭାବ ଜାଗିଉଠେ ।

ପ୍ରହରାଜଂକ ଉତ୍ସଭାଷା (Source language) ରୁ ଗଳ୍ପର ଚୟନ ବେଳେ ଏହାର

ଭାବପକ୍ଷ ପ୍ରତି ଦୃଷ୍ଟିଦେବାକୁ ତଥା ଏହାର ରୂପାୟନ **'ଆମ ସାହିତ୍ୟର ରୁଚି ଓ ରୀତିରେ'** କରିବାର ପରାମର୍ଶ ଅତ୍ୟନ୍ତ ଉପାଦେୟ । ଛାୟାନୁବାଦରେ ଗୁରୁତ୍ୱଦେବା ସହ ସେ **ଭାଷାନ୍ତରିତ** ଗଳ୍ପର ପ୍ରକୃତି ନିର୍ଦ୍ଧାରଣରେ ସଚେଷ୍ଟ । ଭାଷାନ୍ତରିତ ଗଳ୍ପ ସଂପର୍କରେ ସଂଭବତଃ ଏହା ପ୍ରଥମ ଆଲୋଚନା ।

ଓଡ଼ିଆ ଗଳ୍ପ ଆଲୋଚନାର ଧାରା ବଡ଼ ବିଚିତ୍ର । ନିର୍ଦ୍ଦିଷ୍ଟ ଗୋଟିଏ ରଚନା-ରୂପରେ ବାନ୍ଧିହୋଇ ସେ ରହିନାହିଁ । ପବନଭଳି ଭରିଯାଇଚି ସେ ଧାରା ସର୍ବତ୍ର । ତାହା ହଉ ପଛେ ସଂବାଦ, ପ୍ରବଂଧ, ଭୂମିକା କି ଭ୍ରମଣକାହାଣୀ । ହଁ ବିଚିତ୍ରକଥା ଭ୍ରମଣକାହାଣୀରେବି ଦେଖାଯାଏ ଗଳ୍ପ ଆଲୋଚନାର ଅବିଶ୍ୱାସ୍ୟ ନମୁନା । କବି କଥାକାର ଚିନ୍ତାମଣିମହାନ୍ତି ଙ୍କ ଜୟପୁର (୧୯୩୪) ଭ୍ରମଣ ବୃତ୍ତାନ୍ତରେ ଜୟପୁର ମହାରାଜା ବିକ୍ରମ ଦେବବର୍ମାଙ୍କ ସାହିତ୍ୟିକ ରୂପର ନିଦର୍ଶନ ଛଳରେ ବିକ୍ରମଦେବ ବିରଚିତ 'ଗୁଣବତୀ ପତ୍ନୀ' ଗଳ୍ପର ନିଜ ଭ୍ରମଣ କାହାଣୀରେ ସଂକଳନ କରିବା ଓ ତାର ଆଲୋଚନା ମଧ୍ୟ ଗ୍ରଥିତ କରିବା ଅତ୍ୟନ୍ତ କୌତୂହଳପ୍ରଦ । ଜଣେ ବିଲାତଫେରନ୍ତା ଓଡ଼ିଆ ବାରିଷ୍ଟର ମାତା, ପିତା, ପତ୍ନୀ ତ୍ୟାଗ ପୂର୍ବକ ଅଲଗାରହି ଓକିଲାତି ସହ ମଦ୍ୟପାନ, ବେଶ୍ୟାଗୃହଗମନ, ଜୁଆ-ମଗ୍ନ, ମା'କୁ ଅପମାନିତକରି ଘରୁ ତଡ଼ିଦେବା ଓ ଅସୁସ୍ଥାବସ୍ଥାରେ ପତ୍ନୀର ସେବାପାଇ ତା' ମନପରିବର୍ତ୍ତିତ ହେବା ଓ ସୁପୁତ୍ରଭାବେ ତାର ରୂପାନ୍ତରହିଁ କାହାଣୀର ଆଖ୍ୟାନଭାଗ । ଚିନ୍ତାମଣିଙ୍କ ଆଲୋଚନା ଗଳ୍ପର ଚରିତ୍ରମାନଙ୍କ ଦୋଷଗୁଣ ତଥା ଭାଷା ଏ ଦ୍ୱିବିଧ ପକ୍ଷକୁ ମୂଳତଃ ଆଧାର କରିଚି । ଦୁର୍ଲ୍ଲଭ ଏ ଭ୍ରମଣବୃତ୍ତାନ୍ତର ଗଳ୍ପ-ଆଲୋଚନା ସଂପର୍କୀୟ କୀୟଦଂଶ ଏପରି :

''ଗଳ୍ପର 'ଗୁଣବତୀ ପତ୍ନୀ' ନାମ ସାର୍ଥକ ହୋଇଅଛି । ଏହାଖାଲି ଗଳ୍ପ ନୁହେଁ- ଆଧୁନିକ ସମୟର ଖଣ୍ଡିଏ ଚିତ୍ର । × × ପୁରୁଷର ଭାଷା କଠୋର ଏବଂ ସ୍ତ୍ରୀର ଭାଷା କୋମଳ । ଗଳ୍ପରେ ସେହି ସ୍ୱାଭାବିକତା ଅକ୍ଷୁଣ୍ଣ ରହିଅଛି । × × ପୁତ୍ରବଧୂ ହୀରାମଣିର ଚରିତ୍ରକୁ ମଧ୍ୟ ଲେଖକ ହୀରା ମଣିରେ ମଣ୍ଡିତ କରିଅଛନ୍ତି । କେତେଜଣ ତରୁଣୀ ଧାରଣାକରି ଦାରିଦ୍ର୍ୟ, ଦୁଃଖ ସ୍ୱଇଚ୍ଛାରେ ବରଣକରିବାକୁ ସମର୍ଥ ହୋବେ ! ଆଉକେହି ନହେଉ ପଛେ ମାତ୍ର ହୀରାମଣି ହୋଇପାରେ । ଏ ହେତୁ ସେ ଯେ ହୀରାମଣି, ତାହାର ଏ ନାମ ସାର୍ଥକ । ଗଳ୍ପଟିରେ ମୌଳିକତା ଅଛି, ବିଶେଷତ୍ୱ ଅଛି, ଛାଞ୍ଚ ଦୃଢ଼ ଏବଂ ସୁନ୍ଦର । ସାଧାରଣ ବୋଧଗମ୍ୟ କରିବାପାଇଁ ଗଳ୍ପଟିକୁ ସରଳ କରାଯାଇଅଛି । ଜିଗର, ମଙ୍ଗିଲା, ଖୁସାମତି , ନିହାତି, ଘଇତା, ମାଇପ, ବାପୁଡ଼ା, ଥୋଡ଼ା, ଭଲେ ପ୍ରଭୃତି ଅନେକ ଗ୍ରାମ୍ୟଶବ୍ଦ ବ୍ୟବହୃତ ହୋଇ ବିଷୟକୁ ଅଧିକ ସରଳ ଏବଂ ସୁଖପାଠ୍ୟ କରିଅଛି । ସ୍ଥାନ ବିଶେଷରେ ବୁଟ, ଓବର କୋଟ, ହ୍ୟାଟ, ପୋର୍ଟର ସୁଟକେଶ ପ୍ରଭୃତି ଇଂରେଜୀ ଶବ୍ଦ ବ୍ୟବହୃତ ହୋଇଅଛି ; ମାତ୍ର ତାହା ଓଡ଼ିଆ ଅକ୍ଷରରେ ହୋଇଥିବାରୁ ପଠନର ଅସୁବିଧା ଦୂର ହୋଇଅଛି ।'' ଚିନ୍ତାମଣିଙ୍କ ଦୃଷ୍ଟିଭଙ୍ଗୀ ମାଧ୍ୟମରେ ପ୍ରାଥମିକ ସ୍ତରର ଓଡ଼ିଆ ଗଳ୍ପ ଆଲୋଚନାର ରୂପ ଜାଣିବାର ଏହା ଅପରତମ ଅବଲମ୍ବନ । ଗଳ୍ପର ଭାଷିକପକ୍ଷ ସଂପର୍କୀୟ ଚିନ୍ତାମଣିଙ୍କ

ଆଲୋଚନା ଲେଖକ ମାନଙ୍କୁ ନାନାଭାବେ ସଚେତନ କରିଥିବ ।

ଓଡ଼ିଆ ଗଳ୍ପ ଆଲୋଚନାର ଯେଉଁ କେତେକ କୌତୂହଳୋଦ୍ଦୀପକ ଚରିତ୍ର ପ୍ରାଥମିକ ପର୍ଯ୍ୟାୟରେ ଅର୍ଥାତ୍ ପ୍ରାୟ ୧୯୩୦ - ୩୫ ମଧ୍ୟରେ ଲକ୍ଷ୍ୟ କରାଯାଏ ତାହା ଏପରି :

କ) ଗଳ୍ପର ନୀତିନିୟମ, ସ୍ୱରୂପ ସଂପର୍କରେ ଗମ୍ଭୀରତାପୂର୍ଣ୍ଣ ସ୍ୱୟଂ ସଂପୂର୍ଣ୍ଣ ଆଲୋଚନା ଅତ୍ୟନ୍ତ ଦୁର୍ଲ୍ଲଭ ।

ଖ) ପ୍ରବଂଧ ବ୍ୟତୀତ ଅନ୍ୟାନ୍ୟ ରଚନା-ରୂପ ଯଥା ସଂବାଦ, ଭୂମିକା, ଭ୍ରମଣ-ବୃତ୍ତାନ୍ତ ଆଦିରେ ମଧ୍ୟ ଗଳ୍ପ-ଆଲୋଚନା ଉପଲଭ୍ୟ ।

ଗ) ଏକକ ଗାଳ୍ପିକ କିମ୍ବା ସଂକଳନ ଉପରେ ସମୀକ୍ଷା ନାହିଁ, ଯଦିଓ କାବ୍ୟ, ନାଟକ ବା ଉପନ୍ୟାସ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଲକ୍ଷଣୀୟ ।

ଗଳ୍ପ ଆଲୋଚନାର ପ୍ରାଥମିକ ସ୍ତର ଅତୀତହେଲା । ବିତିଗଲା ବର୍ଷପରେ ବର୍ଷ । ଓଡ଼ିଶାର ସ୍ୱତନ୍ତ୍ର ରାଜ୍ୟଭାବେ ସ୍ୱୀକୃତି, ଭାରତର ସ୍ୱାଧୀନତାପ୍ରାପ୍ତି ପରି ରାଜନୀତିକ ସତ୍ୟ ଘଟିତହେଲା । ଭାରତ ଅଭିଜ୍ଞ ହେଲା ତିନି ତିନୋଟି ଯୁଦ୍ଧ ଦ୍ୱାରା । ଜାତୀୟତାବୋଧର ବିକାଶ, ଶିକ୍ଷାର ପ୍ରସାର, ସାଂସ୍କୃତିକ ଚେତନାର ବୃଦ୍ଧି ସହ ସମୟକ୍ରମେ ନୈତିକ ଅବନତି ଓ ହିଂସାର ପ୍ରାବଲ୍ୟ ସାମାଜିକ ଜୀବନକୁ ବିଚଳିତ କଲା । ପାଶ୍ଚାତ୍ୟଶିକ୍ଷା ଓ ସଭ୍ୟତା ପ୍ରତି ଉନ୍ମୁଖତା ସହ ସାହିତ୍ୟରଚନାରେ ବିବିଧ ନବୀନ ଭାବବୋଧର ଉଦୟ ଘଟିଲା । ଓଡ଼ିଆରେ ଲେଖାହେଲା ରାଶିରାଶି ଗଳ୍ପ । ପଞ୍ଚମ ଓ ଷଷ୍ଠ ଦଶକ ଥିଲା ପରୀକ୍ଷା ନିରୀକ୍ଷାର ସମୟ । ବହୁ ପ୍ରତିଶ୍ରୁତିପୂର୍ଣ୍ଣ ଗାଳ୍ପିକ ଗ୍ରହଣକଲେ ଏକଦା ପ୍ରତିଷ୍ଠିତ ଗାଳ୍ପିକଙ୍କ ସ୍ଥାନ । ସୃଜନପ୍ରକ୍ରିୟାର ଏ ମହିମାନ୍ୱିତ ରୂପର ସମତାଳରେ କିନ୍ତୁ ଗତି କରିନଥିଲା ସମାଲୋଚନା । କେଜାଣି କେଉଁ ଆଶ୍ଚର୍ଯ ଅଭିଶାପରେ ଗଳ୍ପ ଆଲୋଚନାରେ ଆସିଥିଲା ଅପୂର୍ବ ଏକ ସ୍ଥାଣୁତା । ପ୍ରାକ୍‌ସ୍ୱାଧୀନତାର ସମାଲୋଚନା ଥିଲା ମଧ୍ୟଯୁଗୀୟ କବିଙ୍କ କାଳନିରୂପଣ ଓ ସେମାନଙ୍କ ଧର୍ମମତ ସ୍ଥିର କରିବାରେ ବ୍ୟସ୍ତ । ସ୍ୱାଧୀନତାର ପ୍ରାକ୍‌କାଳରେ ସମାଲୋଚନା ସାହିତ୍ୟର ଅନ୍ୟାନ୍ୟ ବିଭାବରେ ଦୃଷ୍ଟିପାତକଲା ସତ, ମାତ୍ର ବିସ୍ମୃତ ହେଲା କ୍ଷୁଦ୍ରଗଳ୍ପକୁ ।

କଦବା କ୍ୱଚିତ୍ କେହିକେହି କ୍ଷୁଦ୍ରଗଳ୍ପର ନୀତିନିୟମ, ସୃଷ୍ଟିଆଦିର ଅନୁଶୀଳନ କରୁଥିଲେ । ସାହିତ୍ୟିକ ଓ ଜୟପୁରର ଶାସକ ବିକ୍ରମଦେବବର୍ମାଙ୍କ ଏ ସଂପର୍କୀୟ ସଚେତନତା ଉତ୍କଳସାହିତ୍ୟ, ନବପର୍ଯ୍ୟାୟ ବୈଶାଖ ୧୩୪୫, ଅପ୍ରେଲ ୧୯୩୮ ମସିହା ସଂଖ୍ୟାରେ ପ୍ରକାଶିତ । 'କଥାନିୟମ' ଗଳ୍ପ ଆଙ୍ଗିକରେ ଲିଖିତ ଏ ଆଲୋଚନାଟି ଜୟପୁର ନିବାସୀ ବୀରବର ସିଂ ଓ ତାଙ୍କର ବିଦୂଷୀ ପତ୍ନୀ ହେମଲତାଙ୍କ କଥୋପକଥନ ଆଧାରିତ । ବୀରବର 'ନବ୍ୟସାହିତ୍ୟ' ପତ୍ରିକାରେ ତାଙ୍କ ଗଳ୍ପର ପ୍ରଶଂସାପୂର୍ଣ୍ଣ ସମାଲୋଚନା ପ୍ରକାଶିତ ହୋଇଥିବା ପତ୍ନୀଙ୍କୁ ଜଣାନ୍ତି । ପତ୍ନୀ କହିଚନ୍ତି-ସମାଲୋଚକ ହୁଏତ ତାଙ୍କର ବନ୍ଧୁ ହୋଇଥିବେ ତେଣୁ ପ୍ରଶଂସା କରିଛନ୍ତି । ଏହି କ୍ରମରେ ଆଲୋଚନା ନିମ୍ନଭାବେ ଗତିଶୀଳ :

ବୀର- ରଚନା ଭଲହୋଇଥିଲେ ଭଲବୋଲି ; ମନ୍ଦ ହୋଇଥିଲେ ମନ୍ଦବୋଲି ସମାଲୋଚକ ପ୍ରକାଶକରେ ।

ହେମ- ପ୍ରକୃତ ସମାଲୋଚକ ମାତ୍ର ସେପରିକରେ । xxx ସେପରି ସମାଲୋଚକର ସମାଲୋଚନା ମାତ୍ର ସାହିତ୍ୟ ମଙ୍ଗଳକାରକ । ସମାଲୋଚନା କରଣ ଆମ୍ଭ ପଣ୍ଡିତଙ୍କର ମଧ୍ୟ ଆଗୋଚର । ତାକୁ ଆଙ୍ଗଲୋ ପଣ୍ଡିତଙ୍କ ଠାରୁ ଶିଖିବା ସମୁଚିତ । ସମାଲୋଚନରେ ଗୁଣ ଏବଂ ଦୋଷ ବିଶଦରୂପେ କଥିତ ହେବା ନ୍ୟାର୍ଯ୍ୟ ।

× × ×

ହେମ- ତୁମ୍ଭମାନଙ୍କ କଥାଳି 'ବହ୍ୱାରମ୍ଭେ ଲଘୁକ୍ରିୟା' । ଆରମ୍ଭର ପୁଷ୍ଟି ଅନ୍ତରେ ନଥାଇ, ତାହା ମୂଷିକ ଲାଙ୍ଗୁଳାକୃତି ଧାରଣ କରିଥାଏ । ମଧ୍ୟ ତାହା ଉଦ୍ଦେଶ୍ୟବିହୀନ, ସନ୍ଦର୍ଭଶୁଦ୍ଧିହୀନ, ନୀତିବିବର୍ଜିତ ଏବଂ ଦୁଷ୍ଟ ଶବ୍ଦାନ୍ୱିତହୋଇଥାଏ ।

ବୀର- ଦୁଷ୍ଟ ଶବ୍ଦପ୍ରୟୋଗ ଅବଶ୍ୟ ଦୂଷ୍ୟ ଅଟେ । କିନ୍ତୁ ଜାଣିବା ଉଚିତ ଯେ ଗଳ୍ପ ନୀତିଶାସ୍ତ୍ର ନୁହେଁ । ନୀତିବଦ୍ଧ କଥା କେତୋଟି ଥାଇପାରେ, କିନ୍ତୁପ୍ରତ୍ୟେକ କଥାକୁ ନୀତିଶୃଙ୍ଖଳାବଦ୍ଧ କରିବାକୁ ଯତ୍ନକଲେ, କଥାକୁସୁମ ପ୍ରସ୍ଫୁଟିତ ହୋଇନପାରେ, ବରଂ ସୌନ୍ଦର୍ଯ୍ୟଭ୍ରଷ୍ଟ ହୁଏ । କଥାର ପ୍ରୟୋଜନ ଆନନ୍ଦ । ତାହା କେବଳ ନୀତିପୂର୍ଣ୍ଣ ହେବା ଆବଶ୍ୟକ ବୋଲି ଅରସିକେ କହି ପାରନ୍ତି । କଥା ରଚନା ଏକ କଳା ମାତ୍ର ।

ହେମ- ଗଳ୍ପ ନୀତିପୂର୍ଣ୍ଣ ହେବା ଅନାବଶ୍ୟକ । କିନ୍ତୁ ତାହା ଦୁର୍ନିତୀସୂଚକ ନୋହିଥିବା ବିଧେୟ । ବହୁତ ଗଳ୍ପମାନଙ୍କରେ ଦୁର୍ନୀତି ସୂଚିତ ହୋଇ ସେଗୁଡ଼ିକ ଗୃହିଣୀ ଗୃହସ୍ଥଙ୍କ ପଠନର ଅଯୋଗ୍ୟ ହୋଇଅଛନ୍ତି, ଏବଂ ଜାତିର ଅହିତ କରୁଅଛନ୍ତି । ଆଉ କେତେକ ଗଳ୍ପ ଏପରି ଲିଖିତ ଯେ ପଠନାନ୍ତେ ଭାବିବାକୁ ତହିଁ କିଛିହିଁନଥାଏ । ସର୍ବବିଧ କବିତ୍ୱ ଶ୍ରବଣ, ମନନ, ନିଦିଧ୍ୟାସନ ଯୋଗ୍ୟ-ହୋଇଥବା ବିଧେୟ ।

ଆଲୋଚନାଟିରେ ଗଳ୍ପର ଗଠନ, କଳାଧର୍ମ, ଭାବପକ୍ଷର ସମୀକ୍ଷା ତାତ୍ପର୍ଯ୍ୟପୂର୍ଣ୍ଣ । ଗଳ୍ପର ସାମାଜିକ ଅଙ୍ଗୀକାରବଦ୍ଧତା ସହ ଆଦର୍ଶ ଜୀବନଗଠନ ପାଇଁ ଗଳ୍ପର ପ୍ରଭାବ ଏଥିରେ ...ୀକୃତ । ସମାନଭାବେ ଆଦର୍ଶ ସମାଲୋଚକ ସଂପର୍କରେ ମଧ୍ୟ ମତବ୍ୟକ୍ତ କରାଯାଇଚି ।

ଉତ୍ତର ସ୍ୱାଧୀନତାର ଆଲୋଚନାରେ ମଧ୍ୟ କ୍ଷୁଦ୍ରଗଳ୍ପର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ ହୋଇ ...ହିନଥିଲା । ହଁ. ...ମୋହନଙ୍କ ଦାୟରେ ସମାଲୋଚକମାନେ କଦବା କ୍ୱଚିତ୍ ଛ'ମାଣ ଆଠଗୁଣ୍ଠ କି ମ... ... ସହ ତାଙ୍କର ଗଳ୍ପ କେଇଟିର ନାମୋଚ୍ଚାରଣ କରିଥିଲେ କେବେକେବେ ବା

ଫକୀରମୋହନଙ୍କ ପ୍ରଥମ କ୍ଷୁଦ୍ରଗଳ୍ପ କି 'ମାଧମହାନ୍ତିଙ୍କ କନ୍ୟାସୁନା' ପରି ପ୍ରବଂଧ ନଟବର ସାମନ୍ତରାୟ ଲେଖିଥିଲେ । ବିଂଶ ଶତାବ୍ଦୀର ପଞ୍ଚମ-ଷଷ୍ଠଦଶକ ଥିଲା ପ୍ରଚୁର ପ୍ରାଣଶକ୍ତିପୂର୍ଣ୍ଣ । ନୂଆନୂଆ ପତ୍ରିକାର ଅଭ୍ୟୁଦୟ, ନୂଆନୂଆ ବାଗରେ ସୃଜନଶୀଳ ସାହିତ୍ୟ ରଚିତ ହେବାର କାଳ । ପାଣ୍ଡୁଲିପି (୧୯୪୭) ଓ ନୂତନ କବିତା (୧୯୫୫)ର ଆଶ୍ଚର୍ଯ୍ୟ କୁହୁକରେ ଏଇ ଦୁଇଦଶକର ଆଲୋଚକ କବିତାକୁ କଲେ ମଥାମଣି । ସେଇ ଅପ୍ରତିରୋଧ୍ୟ କବିତାଚର୍ଚ୍ଚାର ଅନ୍ଧସ୍ରୋତରେ ଗଳ୍ପ ଆଲୋଚନାର କୌଣସି ବିଶେଷ ନଜିର ମିଳେନାଇଁ । ଯଦିଚ ଏଇ ଦଶନ୍ଧି ଦୁଇଟିରେ ନୂଆ ଧରଣର ଗଳ୍ପ ଲେଖାହୋଇଚି, ବିଶିଷ୍ଟଗାଳ୍ପିକମାନଙ୍କର ପ୍ରଥମ ସଂକଳନଗୁଡ଼ିକ ପ୍ରକାଶିତ ହୋଇଚି, ଏଗୁଡ଼ିକର ଉପଯୁକ୍ତ ଗୁରୁତ୍ୱ ଦେଇ ପ୍ରକାଶ ପାଇଥିବା ସମାଲୋଚନା କିନ୍ତୁ ଅଙ୍ଗୁଳିମେୟ । ଏହି ସମାଲୋଚନାଗୁଡ଼ିକ ପତ୍ରିକାର ପୃଷ୍ଠାରେ ପ୍ରକାଶିତ ହୋଇଥିଲା, ସ୍ୱତନ୍ତ୍ର ଗଳ୍ପ ସମାଲୋଚନାତ୍ମକ ପୁସ୍ତକ ସେପର୍ଯ୍ୟନ୍ତ ଓଡ଼ିଶା ସାହିତ୍ୟସମାଲୋଚନାର କୁକ୍ଷିଗତ ହୋଇନଥିଲା । ବିସ୍ମୟକର ଅଥଚ ଦୁଃଖଦ ଏସ୍ଥିତି ରହିଥିଲା ଦୀର୍ଘଦିନଧରି । ବୈଷ୍ଣବଚରଣ ସାମଲଙ୍କ 'ଓଡ଼ିଆଗଳ୍ପ : ଗତି ଓ ପ୍ରକୃତି' (୧୯୭୪) ର ପ୍ରକାଶନ ଏଇ ଲଜ୍ଜାକର ସ୍ଥିତିକୁ ବଦଳାଇ ଦେଇଥିଲା । ଏହି ଦୃଷ୍ଟିରୁ ଉକ୍ତ ଆଲୋଚନା ଗ୍ରନ୍ଥ ଓ ଆଲୋଚକ ଉଭୟ ଏକ ଐତିହାସିକ ଆଶୀର୍ବାଦ ଭାବେ ପ୍ରତୀତ ହୁଅନ୍ତି ।

'ଓଡ଼ିଆଗଳ୍ପ : ଗତି ଓ ପ୍ରକୃତି' ଗଳ୍ପ ଆଲୋଚନାର ପ୍ରଥମପୁସ୍ତକ । ଗଳ୍ପର ତାତ୍ତ୍ୱିକ ପ୍ରସଙ୍ଗ- ଗୁଡ଼ିକୁ ଗୁରୁତ୍ୱଦେଇ ବିଚାରକରାଯିବା ସହ ଗଳ୍ପର ସମକାଳୀନ ବିବିଧ ସ୍ୱରର ବିଶ୍ଳେଷଣ ପାଇଁ ଏହା ଚେଷ୍ଟିତ । ନାରୀ, ଇତିହାସ ଓ କିମ୍ବଦନ୍ତୀ, ମାନବେତର ଚରିତ୍ର, ପୌରାଣିକ ଆବେଦନ ପରି ଉପାଦାନଭିତ୍ତିକଗଳ୍ପର ଅଧ୍ୟୟନ ମଧ୍ୟ ସ୍ୱତନ୍ତ୍ରଭାବେ ଏଥିରେ ଗ୍ରଥିତ । ଏଥିରେ ମଧ୍ୟ ରହିଚି ନୂଆପ୍ରକାର ଫର୍ମର ଗଳ୍ପର ବିଶେଷ ଆଲୋଚନା । ଗଳ୍ପର ପ୍ରଥମ ଆଲୋଚନାପୁସ୍ତକ ହେତୁ ଶାଖାପ୍ରଶାଖା ବହୁଳ ଏ ଆଲୋଚନାପୁସ୍ତକର ବିଷୟସୂଚୀ ଅଧିକତର ଶୃଙ୍ଖଳିତ ହୋଇପାରିନାହିଁ । ସାଂପ୍ରତିକ ଗଳ୍ପଚେତନା ବୋଲି ଆଲୋଚନା ପରେପରେ ପରିସମାପ୍ତି ଆଡ଼କୁ ଓଡ଼ିଆ କ୍ଷୁଦ୍ରଗଳ୍ପର ଗତି ଓ ପ୍ରକୃତି ଶୀର୍ଷକର ଆଲୋଚନାଟିଏ ରହିଛି, ଯେଉଁଠି ସାଂପ୍ରତିକ ଗଳ୍ପର ପ୍ରସଙ୍ଗ ପୁନଃ ଉପସ୍ଥାପିତ । ଏହା ପୁନରୁକ୍ତି ଦୋଷଯୁକ୍ତ ହେଇପଡ଼ିଛି । ପୁନଶ୍ଚ ଲୋକକାହାଣୀ ଓ କ୍ଷୁଦ୍ରଗଳ୍ପ ପରସ୍ପରଠାରୁ ପ୍ରରୂପ ଓ ପ୍ରବୃତ୍ତି ଉଭୟରେ ସଂପୂର୍ଣ୍ଣ ସ୍ୱତନ୍ତ୍ର ଏବଂ ଉଭୟଙ୍କ ସ୍ୱାତନ୍ତ୍ର୍ୟ ସ୍ୱୀକୃତ ହୋଇସାରିଥିଲେବି ଏ ପୁସ୍ତକରେ ଅଛି 'ଓଡ଼ିଆ ଲୋକଗଳ୍ପରେ ସମାଜ-ଚେତନା' ନାମକ ଆଲୋଚନାଟିଏ । ପୁସ୍ତକରେ ଚର୍ଚ୍ଚିତ ବିଷୟ ଦୃଷ୍ଟିରୁ ଏହି ଆଲୋଚନାର ସଂଯୁକ୍ତି ଅପ୍ରାସଙ୍ଗିକ । ଏସବୁସତ୍ତ୍ୱେ ଆଲୋଚନା ପୁସ୍ତକଟିର ଗୁରୁତ୍ୱ ସ୍ୱୀକୃତ । ଏହି ଆଲୋଚକଙ୍କ 'ଓଡ଼ିଆଗଳ୍ପ: ସ୍ରଷ୍ଟାମାନସ' ପ୍ରକାଶିତହୁଏ ୧୯୭୮ ମସିହାରେ । ପ୍ରଥମଗ୍ରନ୍ଥଟି ତତ୍ତ୍ୱ ଓ ତଥ୍ୟ ଆଶ୍ରିତ ଗଳ୍ପର ଧାରା ପ୍ରବାହକୁ ବିଶ୍ଳେଷଣ କରିଥିବା ବେଳେ ଦ୍ୱିତୀୟ ଗ୍ରନ୍ଥଟି ଉଲ୍ଲେଖନୀୟ କୃତିତ୍ୱ ହାସଲ କରିଥିବା ଗାଳ୍ପିକମାନଙ୍କ ଗଳ୍ପ ସଂପର୍କିତ ଆଲୋଚନା ଧାରଣ କରିଛି । ଭଗବତୀଚରଣଙ୍କ ଆଲୋଚନା

ପ୍ରସଙ୍ଗରେ ଘିନୁଆର ଶିକାର ଗଳ୍ପରେ, ଗୋବିନ୍ଦସରଦାରର ମୁଣ୍ଡକାଟିବା ତାର ଶ୍ରେଣୀଚେତନାର କାରଣରୁ ନୁହେଁ ବରଂ ସ୍ତ୍ରୀପ୍ରତି ଅପମାନ ଜନିତ ଘୃଣା ଓ ଆକ୍ରୋଶଜାତ ବୋଲି ଶ୍ରୀ ସାମଲଙ୍କ ମନ୍ତବ୍ୟ ଏବେବି ବିତର୍କ ସୃଷ୍ଟିକରେ । ଏପରି ନୂଆ ବ୍ୟାଖ୍ୟା ସଂକଳନର ଗୌରବବୃଦ୍ଧିରେ ସହାୟକ ହୋଇଛି । ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ (ଦୁଇଭାଗ ୧୯୯୦) ଶ୍ରୀ ସାମଲଙ୍କ ଅନ୍ୟତମ ଉଲ୍ଲେଖନୀୟକୃତି । ଏହା କେବଳ ଇତିହାସନୁହେଁ କ୍ଷୁଦ୍ରଗଳ୍ପର ଉଭୟ ଭାବ ଓ ରୂପପକ୍ଷର ଶହେ ଦଶପୃଷ୍ଠାର ବିସ୍ତୃତ ଆଲୋଚନା ମଧ୍ୟ ମୁଖଶାଳା ଭାବେ ଉକ୍ତ ଗ୍ରନ୍ଥରେ ଗ୍ରଥିତ । କ୍ଷୁଦ୍ରଗଳ୍ପର ଉତ୍ସସଂଧାନର ପ୍ରଚେଷ୍ଟା ମଧ୍ୟ ପୁସ୍ତକକୁ କରିଚି ତଥ୍ୟ ବହୁଳ । ଚନ୍ଦ୍ରଶେଖର ନନ୍ଦ, ଦୟାନିଧି ମିଶ୍ର, ନର୍ମଦା କର, ପ୍ରତିଭା କର, ଜନାର୍ଥନ ମହାନ୍ତି, କାଳିପ୍ରସନ୍ନ କବି, ଦେବହୂତି ଦେଇ, ରଘୁନାଥ ଦାସଙ୍କ ପରି ସାଧାରଣରେ ଅପରିଚିତ କଥାକାର ମାନଙ୍କ ସଂପର୍କରେ ବିସ୍ତୃତ ଆଲୋଚନା ଏହି ଇତିହାସକୁ କରିଚି ଗୁରୁତ୍ୱପୂର୍ଣ୍ଣ । ତେବେ ଜନୈକା କିଶୋରୀମଣି ଦେଈଙ୍କ ସମ୍ପର୍କୀୟ ସ୍ୱତନ୍ତ୍ର ଆଲୋଚନା ବଡ଼ କୌତୂହଳପ୍ରଦ । ଏହି ଲେଖିକାଙ୍କର ମାତ୍ର ଗୋଟିଏ ଗଳ୍ପ 'ଯେ ଯାହାର ସେ ତାହାର' ଭିତ୍ତିରେ ତାଙ୍କର ମୂଲ୍ୟାୟନ କରାଯିବା, ଅନ୍ୟ କୌଣସି କୃତିର ସୂଚନା ନଥିବା, ଉଲ୍ଲିଖିତ ଗଳ୍ପଟିର ପତ୍ରିକା-ପ୍ରକାଶନର କୌଣସି ପାଦଟୀକା ନଥିବା, ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥର ଦୁର୍ବଳତା । କିଶୋରୀମଣି ଦେଈଙ୍କୁ ଅନ୍ୟ ପ୍ରମୁଖ ଗଳ୍ପକାରଙ୍କ ଭଳି ସ୍ୱତନ୍ତ୍ର ଭାବେ ଆଲୋଚନା କରିବାବେଳେ ତାଙ୍କ ଜୀବନୀ ଓ କୃତି ସଂପର୍କୀୟ ବିଶଦ ବିବରଣୀ, ଗଳ୍ପଧାରାର ସମୃଦ୍ଧିରେ ତାଙ୍କର ଭୂମିକା ଯଥୋଚିତଭାବେ ଆଲୋଚିତ ହୋଇଥିଲେ ଇତିହାସଟିର ଭାରସାମ୍ୟ ରକ୍ଷିତ ହୋଇପାରିଥାନ୍ତା ।

'ଓଡ଼ିଆ ସାହିତ୍ୟରେ ଏହି କ୍ଷୁଦ୍ରଗଳ୍ପ ସଂପ୍ରତି ଏକ ସମୃଦ୍ଧତମ ବିଭାବ' ଅଥଚ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ସଂପର୍କରେ ଏଯାବତ୍ ଖୁବ୍ ବେଶିଚର୍ଚ୍ଚା ହୋଇନଥିବାରୁ ନିତ୍ୟାନନ୍ଦ ଶତପଥୀ ଏଥିରେ ହାତଦେଲେ ଓ ତାଙ୍କର ଆଲୋଚନା ଗୁଡ଼ିକର ସମାହାର ହେଲା 'ଗଳ୍ପ ଓ ଗାଳ୍ପିକ' (୧୯୮୬) ଭଗବତୀଚରଣ, ମହାପାତ୍ର ନୀଳମଣି, ଅଖିଳମୋହନ, ବିଭୂତିଭୂଷଣ, କିଶୋରୀଚରଣ, ମନୋଜ, ଶାନ୍ତନୁ, ଚନ୍ଦ୍ରଶେଖର ଆଦି ଆଠଜଣ ଗାଳ୍ପିକଙ୍କ ସଂପର୍କରେ ସାମଗ୍ରିକ ବା ଏକକ ସଂକଳନ ଆଧାରରେ ଏଥିରେ ଆଲୋଚନା ଗ୍ରଥିତ । ଏହା ସହ ପ୍ରଥମେ ଖୁଦ୍ରଗଳ୍ପ ସଂପର୍କରେ ଓ ଶେଷରେ 'ଓଡ଼ିଆ କ୍ଷୁଦ୍ରଗଳ୍ପରେ ସ୍ଥିତିବାଦୀ ଚେତନା' ନାମକ ଦୁଇଟି ଏପରି ମୋଟ ଦଶଟି ଆଲୋଚନା ସଂକଳିତ । ଆଲୋଚନା ଗୁଡ଼ିକରେ ନିତ୍ୟାନନ୍ଦଙ୍କ ମନନଶୀଳତାର ଛାପ ଗଭୀର । ପ୍ରତିଟି ଗାଳ୍ପିକଙ୍କୁ ବଡ଼ ସମ୍ବେଦନଶୀଳଭାବେ ସେ ପଢ଼ିଚନ୍ତି ଓ ସେମାନଙ୍କ ରଚନାର ଗତିବିଶ୍ଳେଷଣ କରିଛନ୍ତି । ଆଲୋଚନାଗୁଡ଼ିକର ଆବେଦନ ସ୍ପଷ୍ଟ ଓ ପ୍ରଭାବଶାଳୀ । କେଉଁଠିକେଉଁଠି ଆଲୋଚକଙ୍କର କେତେକ ମନ୍ତବ୍ୟ ଆଲୋଚନାର ଅଂଶବିଶେଷକୁ ବଡ଼ ଲଘୁ କରିଦେଇଚି ।

ଅଖିଳମୋହନଙ୍କ ଗଳ୍ପରେ କିଶୋରୀଚରଣଙ୍କ ଗଳ୍ପର ଗଭୀରତା ନାହିଁ **XXX** କିଶୋରୀଚରଣ ବା ମନୋଜଙ୍କ ଗଳ୍ପ ପରି ତାଙ୍କ ଗଳ୍ପ deep ଆଉ disturbing ନୁହେଁ । ପୁନଶ୍ଚ

ମନୋଜ ବା ନୀଳମଣିଙ୍କ ଗଳ୍ପ ପରି ତାଙ୍କ ଗଳ୍ପରେ message (ବାର୍ତ୍ତା) ନାହିଁ, ବା ସୁରେନ୍ଦ୍ରଙ୍କ ପରି ତାଙ୍କ ଗଳ୍ପ ସାମଗ୍ରିକତାକୁ ବା ବିଭିନ୍ନତାକୁ ଆବୋରି ବସିନାହିଁ ।'

(ଅଭିଜାତ ଗଳ୍ପସ୍ରଷ୍ଟା ଅଖିଳମୋହନ)

''ସୁରେନ୍ଦ୍ର ମହାନ୍ତି ଓ ମହାପାତ୍ର ନୀଳମଣି ସାହୁ ଚିନ୍ତା ଓ ଚେତନାର ନାନାବିଧ କୋଟୀକୁ ସ୍ପର୍ଶକରି ସାଧାରଣ ଜୀବନଠାରୁ ଐତିହାସିକ ପରିବେଶ ପର୍ଯ୍ୟନ୍ତ ଗଳ୍ପ ସାଉଁଟିଥିବାବେଳେ ଶ୍ରୀ ଦାସ ତାଙ୍କ ମଧ୍ୟବିତ୍ତ ଜୀବନର ବଳୟ ମଧ୍ୟରେ ଛନ୍ଦି ହୋଇ ରହିଥିଲେ ।''

(କିଶୋରୀଚରଣଙ୍କ ଗଳ୍ପମାନସ ଓ ଗମନ)

କେହିତ ଅନ୍ୟ କାହାପରି ହୁଅନ୍ତି ନାହିଁ - ପ୍ରତ୍ୟେକେ ଆପଣାର ସ୍ୱାତନ୍ତ୍ର୍ୟ ନେଇ ଉଭା । ଏମିତି ଉଦାହରଣ ଯାକ ଜଣକର ସ୍ୱାତନ୍ତ୍ର୍ୟକୁ ଦର୍ଶାଇବା ଅପେକ୍ଷା ଅନ୍ୟମାନଙ୍କ ସ୍ୱାତନ୍ତ୍ର୍ୟ ତାଠି ନଥିବାଯୋଗୁଁ ତାର ନ୍ୟୂନତାର ଆଭାସହିଁ ଦିଅନ୍ତି, ଯଦିଚ ଅନ୍ୟର ସ୍ୱାତନ୍ତ୍ର୍ୟ ଜଣେ ଗ୍ରହଣକଲେ ଅନୁକାରୀଟିଏ ସିନା ହୁଏ, ଅନନ୍ୟ ହୁଏନାହିଁ- ଆଲୋଚକ ବିସ୍ମୃତ ହେଇଚନ୍ତି ଏକଥା ।

ଗଳ୍ପର ରୁକ୍ଷ ସମାଲୋଚନାର ଧାରାରେ ବଡ଼ ମନୋଜ୍ଞ ଆଲୋଚନା ଗ୍ରନ୍ଥଟିଏ ରଚିତ, ହେଲା ଜଣେ ପ୍ରବୀଣ ଗାଳ୍ପିକ କିଶୋରୀଚରଣଙ୍କ ଦ୍ୱାରା 'କଥାସାହିତ୍ୟର କଳା ଓ କାରିଗରୀ' (୧୯୯୦) ନାମରେ । ଜଣେ ସ୍ରଷ୍ଟାର ଅନୁଭବ ଅଭିଜ୍ଞତା ସହ ଅନୁପମ କଥକତା ମଧ୍ୟରେ ଗଳ୍ପର ବିବିଧ ତାତ୍ତ୍ୱିକଦିଗର ଆଲୋଚନା ଥିଲା ଏହି ଗ୍ରନ୍ଥର ବିଶିଷ୍ଟ୍ୟ । ସୃଜନଶୀଳ ସମାଲୋଚନାର ଯେ ଥିଲା ଏକ ବିଶିଷ୍ଟ ଉଦାହରଣ । ଅନେକ ତାତ୍ତ୍ୱିକ ପ୍ରଶ୍ନ ନିଜଭାବେ ସହଜ ଭାଷାରେ କହିଥିଲା କିଶୋରୀ ଚରଣଙ୍କ ସ୍ୱାତନ୍ତ୍ର୍ୟ । ଗଳ୍ପର ସ୍ୱରୂପ ସଂପର୍କରେ ତାଙ୍କର ଧାରଣା, ତାଙ୍କ ନିଜଭାଷାରେ-

''ଗପ ଯେତେ ଛୋଟ ହେଲେବି ବିନ୍ଦୁରେ ପର୍ଯ୍ୟବସିତ ହେଇପାରିବ ନାହିଁ, ଏବଂ ଯେତେ ଛବିଳ ହେଲେ ମଧ୍ୟ ଛବିଟିଏ ହୋଇ ରହିବନାହିଁ । ତା ପାଇଁ ଲୋଡ଼ା ଯତ୍ ସାମାନ୍ୟ ବିସ୍ତାର ଏବଂ ପ୍ରବାହ ।''

ସେହିପରି ସୁଖପାଠ୍ୟ ଗଳ୍ପ ପାଇଁ ଦୁଇଟି କଥାରେ ଗୁରୁତ୍ୱ ଦିଅନ୍ତି ଆଲୋଚକ । ପ୍ରଥମତଃ ଅନ୍ତରଙ୍ଗ କଥକତା, ଅପରଟି ଗଳ୍ପଶେଷରେ ପାଠକମନରେ ସୃଷ୍ଟି ହେଉଥିବ ଉଦ୍‌ବିଗ୍ନତା । ଅନ୍ତରଙ୍ଗ କଥକତା ବିଷୟରେ ସେ ଲେଖନ୍ତି, 'ପାଠକର କାନରେ କୁହ । ଏକାନ୍ତରେ, ତାର ଅନ୍ତରଙ୍ଗ ବନ୍ଧୁପରି । କେତେକ କ୍ଷେତ୍ରରେ 'ମୁଁ' ର ମୁହଁରେ ଗପ ଶୁଣେଇଲେ ଭଲହେବ ପରା' । ଜଣେ ପ୍ରକୃତ ଆଲୋଚକ ରୂପରେ କିଶୋରୀଚରଣ ଏହି ଜାତୀୟ କଥକତାର ସୀମାବଦ୍ଧତାକୁ ମଧ୍ୟ ସୂଚାଇ ଥାଆନ୍ତି, 'ମୁଁ ନିଜ ଭାବନା ଛଡ଼ା ଆଉ କାହାରି ଭାବନାରେ ଦଖଲ ଦେଇପାରିବନାହିଁ' । ତତ୍ତ୍ୱର ସହଜ ବ୍ୟାଖ୍ୟା, ବ୍ୟକ୍ତିଗତ ଧାରଣାର ପ୍ରଭାବଶାଳୀ ଉପସ୍ଥାପନା ମାଧ୍ୟମରେ କିଶୋରୀଚରଣଙ୍କ ଏ ପୁସ୍ତକ ଗଳ୍ପ ଆଲୋଚନାର ଏକ ଉଲ୍ଲେଖନୀୟ ସଂଯୋଜନ ।

କିଶୋରୀଚରଣଙ୍କ କଳା ଓ କାରିଗରୀ ସହ ଓଡ଼ିଆ ପାଠକ ଭେଟିଲା କବି ଓ ଆଲୋଚକ ସୌରୀନ୍ଦ୍ର ବାରିକଙ୍କ 'ବାମନର ପାଦ' (୧୯୯୧); ସୌରୀନ୍ଦ୍ରଙ୍କ ବିଭିନ୍ନ ସମୟରେ ପ୍ରକାଶିତ ଗଳ୍ପ ସଂପର୍କୀୟ କୋଡ଼ିଏଟି ଆଲୋଚନାର ସଂକଳନ । ଗଳ୍ପର ତାତ୍ତ୍ୱିକ ଦିଗ, ଏକକ ଗାଳ୍ପିକ ଓ ସଂକଳନର ସମୀକ୍ଷା ଭାବେ ଆଲୋଚନା ଗୁଡ଼ିକ ତ୍ରିବିଧ ବିଭକ୍ତ । ସୌରୀନ୍ଦ୍ରଙ୍କ ସୃଜନଶୀଳତା ସହ ମର୍ମ ପାଖରେ ସହଜରେ ପହଞ୍ଚାଇଦେବାର ଦକ୍ଷତା ଏହି ସଂକଳନର ଆଲୋଚନାଗୁଡ଼ିକୁ ସ୍ମରଣୀୟ କରିଛି । ଗଳ୍ପର କ୍ଷୁଦ୍ରତା ଭିତରେ ଅସୀମ ସଂଭାବନାର ସଂକେତ ଏହାର ଏକାଧିକ ଆଲୋଚନାର ପ୍ରତିପାଦ୍ୟ । ସୌରୀନ୍ଦ୍ରଙ୍କର ଏ ବାମନୀୟ ପଦପାତ ଓଡ଼ିଆ ଗଳ୍ପ ଆଲୋଚନାକୁ ବହୁଭାବେ କରିଚି ସମୃଦ୍ଧ ।

ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପକୁ ନେଇ କ୍ଷୀଣ ହେଲେମଧ୍ୟ ଚର୍ଚ୍ଚାର ବାତାବରଣ ରହିଆସିଚି ସବୁବେଳେ । ଏହିଚର୍ଚ୍ଚା ମଧ୍ୟ ପାଇଚି ଗବେଷଣାର ସ୍ୱୀକୃତି । ଗଳ୍ପସଂପର୍କରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଏକାଧିକ ଗବେଷଣା ହୋଇଥିଲେ ମଧ୍ୟ ମୁଦ୍ରିତ ହୋଇଚି ମାତ୍ର ତିନୋଟି, କପିଳେଶ୍ୱର ଗାହାଣଙ୍କ 'ସୀମାବଦ୍ଧତା ଓ ମୁକ୍ତିର ସ୍ୱପ୍ନ' (୧୯୯୪), ଶତ୍ରୁଘ୍ନ ପାଣ୍ଡବଙ୍କ 'କଥାଶିଳ୍ପୀ ମନୋଜ ଦାସ' (୧୯୯୪) ତଥା ବିରାଜମୋହନ ଦାସଙ୍କ 'କ୍ଷୁଦ୍ରଗଳ୍ପରେ ଅନୁନ୍ନତ ସଂପ୍ରଦାୟ' (୧୯୯୭)।

'ସୀମାବଦ୍ଧତା ଓ ମୁକ୍ତିର ସ୍ୱପ୍ନ' ୧୯୨୧ ଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ ଓଡ଼ିଆ ଗଳ୍ପର ଗତିଧାରାର ଭିତ୍ତିଭୂମିରେ ଆଧାରିତ । ଓଡ଼ିଆ କ୍ଷୁଦ୍ରଗଳ୍ପରେ ସବୁଜ ଦୃଷ୍ଟି, ପ୍ରଗତିବାଦୀ ଚେତନା ଓ ଆଧୁନିକ ଚେତନା ଭାବେ ତିନୋଟି ପରିଚ୍ଛେଦ ରଚିତ ହୋଇ ଏଇ ପଚାଶ ବର୍ଷର ଗଳ୍ପର ଭାବଭୂମିକୁ ବିଭିନ୍ନ ଦୃଷ୍ଟିରୁ ଆଲୋଚନା କରିଛି । ଏଥି ସହିତ ଶିଳ୍ପ ପ୍ରକରଣର ଆଲୋଚନା ରହିଚି ସ୍ୱତନ୍ତ୍ରଭାବେ । ଆଧୁନିକ ଚେତନା ପ୍ରସଙ୍ଗର ଆଲୋଚନା ସମକାଳୀନ ଗଳ୍ପ ଆଧାରିତ । ଏଥିରେ ପାଶ୍ଚାତ୍ୟର ସାହିତ୍ୟିକ ବିଭାବ ଗୁଡ଼ିକର ଓଡ଼ିଶୀ ଗଳ୍ପରୂପହିଁ ସମୀକ୍ଷିତ । ଓଡ଼ିଆ କ୍ଷୁଦ୍ରଗଳ୍ପର ଐତିହାସିକ ଓ ତାତ୍ତ୍ୱିକ ପୃଷ୍ଠଭୂମି ଏଥିରେ ସୁନ୍ଦରଭାବେ ପ୍ରଦର୍ଶିତ । ଓଡ଼ିଆ କ୍ଷୁଦ୍ରଗଳ୍ପକୁ ମାର୍କସବାଦୀ ଦର୍ଶନରେ ଅଭିମନ୍ତ୍ରିତ କରିଥିବା ଗାଳ୍ପିକଙ୍କ ନାମ ତାଲିକାରେ ସଚି ରାଉତରାୟଙ୍କ ସ୍ଥାନରେ ବିନୋଦ ରାଉତରାୟ (ପୃ ୮୦) ଙ୍କ ନାମୋଲ୍ଲେଖ ଏକ ଗୁରୁତର ପ୍ରମାଦ ।

ଏକକ ଗାଳ୍ପିକଙ୍କ ସଂପର୍କରେ ପ୍ରକାଶିତ ପ୍ରଥମ ଗବେଷଣା 'ଗ୍ରନ୍ଥ କଥାଶିଳ୍ପୀ ମନୋଜ ଦାସ' । ଏଥିରେ ମନୋଜଙ୍କ ୧୯୪୯ ରୁ ୧୯୯୦ ପର୍ଯ୍ୟନ୍ତ ଲିଖିତ ଗଳ୍ପଗୁଡ଼ିକର ସମୀକ୍ଷା କରାଯାଇଛି । ତାଙ୍କର ସୃଜନଶୀଳତାର ପ୍ରାଥମିକ ପର୍ଯ୍ୟାୟ (୧୯୪୯-୧୯୬୦): ଉନ୍ମେଷ କାଳ, ମଧ୍ୟବର୍ତ୍ତୀ ପର୍ଯ୍ୟାୟ (୧୯୬୧-୭୦): ବିବର୍ତ୍ତନକାଳ ଓ ପରିଣତି ପର୍ଯ୍ୟାୟ (୧୯୭୧-୧୯୯୦): ଉତ୍ତରଣମୁଖୀ ସାଧନାର କାଳ ଭାବେ ପରିକଳ୍ପିତ ଓ ତତ୍‌ଭିତ୍ତିକ ତଥ୍ୟନିଷ୍ଠ ଯୁକ୍ତି ଉପସ୍ଥାପିତ । ମନୋଜଗଳ୍ପର ଆତ୍ମିକ ଓ ଆଙ୍ଗିକ ବୈଶିଷ୍ଟ୍ୟ ନାନା ପର୍ଯ୍ୟାୟରେ ଚର୍ଚ୍ଚିତ । ଚର୍ଚ୍ଚାରେ

ଅଛି ଆନ୍ତରିକତା ଓ ମନନଶୀଳତା । ଆଲୋଚନାରେ ମନୋଜଙ୍କ ପ୍ରତି ଅହେତୁକ ଦୁର୍ବଳତା ଜନିତ ଅତିଶୟୋକ୍ତି କୁତ୍ରାପି ଲକ୍ଷିତ ହୁଏନାହିଁ । ଭାରସାମ୍ୟ ସର୍ବତ୍ର ରକ୍ଷିତ ।

'ଓଡ଼ିଆ କ୍ଷୁଦ୍ରଗଳ୍ପରେ ଅନୁନ୍ନତ ସଂପ୍ରଦାୟ ଶୀର୍ଷକ' ନିବନ୍ଧଟିରେ ଆର୍ଥନୀତିକ ମାନଦଣ୍ଡରେ ଅନୁନ୍ନତ ସଂପ୍ରଦାୟର ନିର୍ଦ୍ଧାରଣ ସ୍ଥିରୀକୃତ । ପ୍ରାକ୍ ଓ ଉତ୍ତର ସ୍ୱାଧୀନତା ପର୍ଯ୍ୟାୟରେ ଏକକ ଗାଳ୍ପିକଙ୍କ ଗଳ୍ପ ଅବଲମ୍ବନରେ ଏ ସଂପ୍ରଦାୟର ଚିତ୍ରର ବୈଚିତ୍ର୍ୟ ଆଲୋଚିତ । ଚନ୍ଦ୍ରଶେଖର ନନ୍ଦ, ଚିନ୍ତାମଣି ମହାନ୍ତି, ଲକ୍ଷ୍ମୀକାନ୍ତ ମହାପାତ୍ର, ବାଙ୍କନିଧି ପଟ୍ଟନାୟକ ଆଦିଙ୍କୁ ସଚ୍ଚି ରାଉତରାୟଙ୍କ ପରେ ଆଲୋଚନା କରାଯିବା କାଳାନୁକ୍ରମିକ ସଙ୍ଗତି ରକ୍ଷା କରିନାହିଁ । ଏକକ ଗାଳ୍ପିକଙ୍କ ଆଲୋଚନାପରେ ପୁଣି ଚତୁର୍ଥ ଅଧ୍ୟାୟରେ ବ୍ୟକ୍ତିଗତ, ସାମାଜିକ ଅସହାୟତା, ନାରୀର ଅସହାୟତା, ପ୍ରେମ ଓ ଦାମ୍ପତ୍ୟ ପ୍ରସଙ୍ଗର ପ୍ରାୟ ଶହେ ଚାଳିଶପୃଷ୍ଠା ବ୍ୟାପୀ ଆଲୋଚନା ପୁନରୁକ୍ତି ମାତ୍ର ।

ଓଡ଼ିଆ ଗଳ୍ପଚର୍ଚ୍ଚାର ବିସ୍ତୃତ କ୍ଷେତ୍ରକୁ କେବଳ ଏଇ କେତୋଟି ଗ୍ରନ୍ଥ ପ୍ରତିନିଧିତ୍ୱ କରନ୍ତି ନାହିଁ, ଆହୁରି ବହୁ ଏକକ ଆଲୋଚନା ମଧ୍ୟ ନିଜନିଜର ସ୍ୱାତନ୍ତ୍ର୍ୟ ପ୍ରମାଣିତ କରିସାରିଛନ୍ତି । ଏକକ ଆଲୋଚନାଗୁଡ଼ିକ ସମ୍ପୃକ୍ତ ଆଲୋଚକଙ୍କ ବିବିଧ ଆଲୋଚନାଗ୍ରନ୍ଥ ମାନଙ୍କରେ ସଙ୍କଳିତ ହୋଇଚି, ନଚେତ୍ ପତ୍ରିକା ପୃଷ୍ଠାରେ ସୀମାବଦ୍ଧ ହୋଇରହିଛି । କୃଷ୍ଣଚରଣ ବେହେରାଙ୍କ 'ଗଳ୍ପ ଉପନ୍ୟାସ' (୧୯୮୯) ମହାପାତ୍ର ନୀଳମଣି ସାହୁଙ୍କ 'ଆମ କଥା ସାହିତ୍ୟର କଥା ଓ ରମ୍ୟରଚନା' ନାନାଭାବେ ଗଳ୍ପଆଲୋଚନାକୁ ପ୍ରସାରିତ କରିବାର ସୁଯୋଗ ସୃଷ୍ଟିକରିଚନ୍ତି । ପ୍ରକାଶକୁମାର ପରିଡ଼ାଙ୍କ 'କଥା, କଥାଗ୍ରନ୍ଥ, କଥାକାର' (୧୯୯୫) ସଂକଳନସ୍ଥ କେତୋଟି ଆଲୋଚନା ନୂଆ ଆଲୋଚକଙ୍କ ଉତ୍ତମ ଗଳ୍ପଦୃଷ୍ଟିର ପରିଚୟ ଦିଏ । ଏତଦ୍ ବ୍ୟତୀତ ରବିନାରୟଣ ବରାଳ, ଦାଶରଥି ଦାସ, ସୀତାକାନ୍ତ ମହାପାତ୍ର, ରବିସ୍ୱାଇଁ, ଶତ୍ରୁଘ୍ନ ପାଣ୍ଡବ ପ୍ରମୁଖ ଗଳ୍ପ ସଂପର୍କୀୟ ଆଲୋଚନାରେ ଆପଣାର ବିଦ୍‌ବତ୍ତା ଦର୍ଶାଇଛନ୍ତି । ଏପରି କେତେଜଣ ଅଛନ୍ତି, ଯେଉଁମାନଙ୍କର ଗୋଟିଏ ଗୋଟିଏ ଆଲୋଚନାହିଁ ସ୍ମରଣୀୟ ହୋଇ ରହିଯାଇଚି । ପେଟେଣ୍ଟମେଡ଼ିସିନର ଉତ୍ସସଂଧାନ ମୂଳକ ଅଧ୍ୟାପିକା ଶାନ୍ତିଦେବୀଙ୍କ ଆଲୋଚନା 'ପେଟେଣ୍ଟମେଡ଼ିସିନ ଓ ନିଦିଧ୍ୟାସନ' ପ୍ରଜାତନ୍ତ୍ର ପୃଷ୍ଠାରେ ୭.୯.୧୯୬୩ରେ ପ୍ରକାଶ ପାଏ ଓ ଫକୀରମୋହନ ଆଲୋଚନାରେ ଏକ ନୂଆ ସୂତ୍ରର ସଂଯୋଜନ କରି ସ୍ମରଣୀୟ ହୁଏ । ସେହିପରି ଦାଶରଥି ଦାସଙ୍କ 'ସୃଜ୍ୟମାନ ଓଡ଼ିଆଗଳ୍ପ : ୧୯୭୨' ଆଲୋଚନାଟି । ବିଭିନ୍ନ ଗାଳ୍ପିକଙ୍କର ଦଶଟି ସଂକଳନର ଭିତ୍ତିରେ ଏହା ଲିଖିତ । ଗଳ୍ପ ସଂକଳନ ଗୁଡ଼ିକ ଆଧାର ହୋଇଥିଲେହେଁ ଆଲୋଚନାଟି ସେଗୁଡ଼ିକଠାରୁ ଅଧିକ ବିସ୍ତାରିତ । ଆଧାରର ସୀମାବଦ୍ଧତା ସେଠି ଅତିକ୍ରାନ୍ତ । ଆଲୋଚନା ପ୍ରସଙ୍ଗରେ 'ଶିକାର' ସଂପର୍କୀୟ ଦାଶରଥିଙ୍କ ମତଟି ନୂଆ ଓ ଚିନ୍ତାପ୍ରଦ-

'ସୁପରିଚିତ ଶିକାର ଗଳ୍ପରେ ଶ୍ରେଣୀଚେତନା ଅପେକ୍ଷା ରାଜନୀତିକ ବ୍ୟଙ୍ଗ ଅଧିକ

ପ୍ରକଟିଛି-ସ୍ୱଦେଶପ୍ରେମିକ ଝପଟ ସିଂକୁ ହତ୍ୟାକଲେ ପୁରସ୍କାର ମିଳେ, ଜାତିଦ୍ରୋହୀ ଶୋଷକ ସାହୁକାରକୁ ମାରିଲେ ଫାଶି, ବଡ଼ ଚମତ୍କାର ବ୍ରିଟିଶ ନ୍ୟାୟ'

ସୀତାକାନ୍ତଙ୍କ ଗଳ୍ପ ଆଲୋଚନାର ଆଧାର କାମ୍ୟୁ, ସାର୍ତ୍ତ୍ର ଓ କାଫ୍‌କାଙ୍କ କ୍ଷୁଦ୍ରଗଳ୍ପ । ନିର୍ବାସିତର ଘରବାହୁଡ଼ା : କାମ୍ୟୁଙ୍କ କ୍ଷୁଦ୍ରଗଳ୍ପ (ଗଳ୍ପ, ସେପ୍ଟେମ୍ବର ୧୯୭୦) ମୁଖାନାଚ ଓ ଆତ୍ମାର ବିଳାପ : ସାର୍ତ୍ତ୍ରାଙ୍କ କ୍ଷୁଦ୍ରଗଳ୍ପ (ଗଳ୍ପ, ଜାନୁଆରୀ, ୧୯୭୧) ଅନ୍ଧାରର ଝୋଟିଚିତା : କାଫ୍‌କାଙ୍କ କ୍ଷୁଦ୍ରଗଳ୍ପ (ଗଳ୍ପ, ଅକ୍ଟୋବର-ଡ଼ିସେମ୍ବର, ୧୯୭୧) ଓଡ଼ିଆ ପାଠକମାନଙ୍କୁ ଆନ୍ତର୍ଜାତିକ ଗଳ୍ପର ଭାବସ୍ପନ୍ଦନ ଜଣାଇବାରେ ବିଶେଷ ସହାୟକ ହେଲା । ଓଡ଼ିଆଗଳ୍ପର ମାନ ଆନ୍ତର୍ଜାତିକ ସ୍ତରକୁ ଅଧିକତର ଉନ୍ନୀତ କରାଇବାରେ ଏକ ଅଦୃଶ୍ୟ ସଚେତନତା ଆନୟନରେ ପ୍ରବଂଧ ତିନୋଟିର ଭୂମିକା ଅନସ୍ୱୀକାର୍ଯ୍ୟ ।

ଉତ୍ତର ସ୍ୱାଧୀନତାର ଓଡ଼ିଆଗଳ୍ପ ସୃଜନଶୀଳତାର ଉତ୍ତୁଙ୍ଗତାରେ ପହଞ୍ଚି ଆପଣାର ଅନନ୍ୟତା ଓ ପ୍ରଭାବଶାଳିତାକୁ ପ୍ରତିଷ୍ଠିତ କରାଇ ପାରିଛି । ସେଇ ଉତ୍ତୁଙ୍ଗତାର ସମସ୍ପର୍ଦ୍ଧୀ ଆଲୋଚନା କିନ୍ତୁ ଦୁର୍ଲ୍ଲଭ । ସେଇ ଦୁର୍ଲ୍ଲଭତା ମଧ୍ୟରେ ତଥାପି ଯେଉଁ ଆଲୋଚନାଗୁଡ଼ିକ ଉପଲଭ୍ୟ, ସେମାନଙ୍କ ଭିତରୁ ଅଧିକାଂଶ ସଫଳ ଓ ତାହାହିଁ ଆଶ୍ୱାସନାର ବିଷୟ । ଆମର ଆଗାମୀ ଆଲୋଚକଗଣ ଗଳ୍ପର ମର୍ମୋଦ୍‌ଘାଟନରେ ଅଧିକ ସମ୍ବେଦନଶୀଳ, ବିଶ୍ଲେଷଣାତ୍ମକ ହେବା ସଙ୍ଗେ ସଙ୍ଗେ ଧୈର୍ଯ୍ୟଶୀଳ ଓ ବହୁପାଠୀ ହେଲେ ଓଡ଼ିଆଗଳ୍ପର ସୃଜନ ପରି ସମୀକ୍ଷାର ଉତ୍ତୁଙ୍ଗତା ପ୍ରକାଶିତ ହୋଇପାରିବ ।

ପ୍ରାଧ୍ୟାପକ, ଓଡ଼ିଆବିଭାଗ,
ବିଶ୍ୱଭାରତୀ, ଶାନ୍ତିନିକେତନ



# ନୂତନ କବିତାର ଅନୁଶୀଳନର ଧାରା(୧୯୪୭-୧୯୯୭): ଏକ ବିହଙ୍ଗାବଲୋକନ

ଗିରିବାଳା ମହାନ୍ତି

'ଅୟାମହଂ ଭୋ' : ନୂତନ କବିତା ତାର ଉପସ୍ଥିତି ଘୋଷଣା କଲା ଓ ଚକିତ ଓଡ଼ିଆ କାବ୍ୟପିପାସୁ ସଚେତନ ହେଲେ ।

କବି ସଚ୍ଚିଦା ନନ୍ଦଙ୍କଠାରୁ ନୂତନ କବିତାର ଯେଉଁ 'ଜ୍ଞାଁ' (genre) ସୃଷ୍ଟି ହେଲା ତାହାର ଅବବୋଧ କ୍ଷେତ୍ରରେ ନାନା ବିଭ୍ରାନ୍ତି ଓ ବିତର୍କ ଦେଖାଦେଲା । ତାଂକ ସୃଷ୍ଟ କବିତାର ଅପାରଂପରିକ ଧାରାକୁ ହଠାତ୍ ଚିହ୍ନି ନପାରି, ପରଂପରା-ଘନିଷ୍ଠ ଓଡ଼ିଆ ପାଠକ ହତଚିକିତ, ବିଭ୍ରାନ୍ତ, ସ୍ଥଳବିଶେଷରେ ଉତ୍‌କ୍ଷିପ୍ତ ହେଲା । ସଚ୍ଚିଦାନଂଦ ପ୍ରଥମ ଓଡ଼ିଆକବି, ଯିଏ ନାନା ଦିଗରୁ ଓଡ଼ିଆ କବିତାକୁ ବିଶ୍ୱ-ସାହିତ୍ୟ-ଚିନ୍ତାଧାରା ସହ ସମୀକୃତ ଓ ସମକକ୍ଷ କରାଇବାର ପ୍ରୟାସ କଲେ । ଫଳତଃ ଓଡ଼ିଆ ସାହିତ୍ୟପୀଠରେ ସଂପୂର୍ଣ୍ଣ ଅନନୁଭୂତ ନୂତନ କାବ୍ୟଧାରା ପ୍ରସାର ଲାଭ କଲା ଓ ପରବର୍ତ୍ତୀ କାଳରେ ଉତ୍ତରସୂରୀଗଣ ଏହି ପୃଷ୍ଠଭୂମିଉପରେ ବିଶ୍ୱ-ଆତ୍ମା ସହ ନିଜ ଆତ୍ମାକୁ ସାମିଲ କରିବାର ପ୍ରୟାସକଲେ ।

ସଚ୍ଚିଦାନଂଦ କାଳସଚେତନ କବି । ନୂତନ କବିତାର ଅବବୋଧ କ୍ଷେତ୍ରରେ ପାଠକୀୟ ଅବମୂଲ୍ୟାୟନ ଲକ୍ଷ୍ୟ କରି ସେ କାଳର ଚାହିଦା ମେଣ୍ଟାଇବା ଉଦ୍ଦେଶ୍ୟରେ ନୂତନ କାବ୍ୟ-ଚିନ୍ତା ଓ କାବ୍ୟ-ଧାରା ସହ ଓଡ଼ିଆ ପାଠକକୁ ପରିଚିତ କରାଇବାର ନୈତିକ ଦାୟିତ୍ୱକୁ ଅଙ୍ଗିକାର କଲେ: 'ଏ ଦେଶର ଜଳବାୟୁରେ ମୋ କବିତାର ଚେହେରା ଯେଉଁ ପ୍ରଶ୍ନଜାଲ ସୃଷ୍ଟି କରିଛି, ସେ ଦୃଷ୍ଟିରୁ ସେ ଗୁଡ଼ିକର ଗଢ଼ଣ ଆଉ 'ଆଙ୍ଗିକା' ସମ୍ବନ୍ଧରେ କିଛି ସୂଚନା ଦେବା ଖାଲି ପ୍ରାସଙ୍ଗିକ ନୁହେଁ, ନିହାତି ପ୍ରୟୋଜନୀୟ xxx'(୧)

ଏ ଉଦ୍ଧୃତିରୁ ମନେ ହୋଇପାରେ ଯେ ସଚ୍ଚିଦାନଂଦ ସମ୍ଭବତଃ କେବଳ ନିଜ କବିତାର ବ୍ୟାଖ୍ୟାର ଦାୟିତ୍ୱ ବହନ କରିଛନ୍ତି, ମାତ୍ର ବାସ୍ତବରେ ଏହା ସତ୍ୟ ନୁହେଁ । 'ପାଣ୍ଡୁଲିପି'ର 'ନାନ୍ଦୀମୁଖ' କୁ ଆଧୁନିକ କବିତା ସଂପର୍କିତ ଇସ୍ତାହାର (menifesto) ଭାବେ ଗ୍ରହଣ କରାଯାଇପାରେ । ଏଥିରେହିଁ ପ୍ରଥମଥର ପାଇଁ ଆଧୁନିକ କବିତାର ବିଶ୍ୱ-ରୂପ ବିଧିବଦ୍ଧ ଭାବେ ବିଧୃତ । ଏଠାରେ ନୂତନ କବିତାର ଆଭିମୁଖ୍ୟ ସଂପର୍କରେ ସବିସ୍ତାର ଆଲୋଚନାପୂର୍ବକ ସଚ୍ଚିଦାନଂଦ କବି-ମନୀଷୀ ଇଲିୟଟଙ୍କ ପରି କବିତାର ତାତ୍ତ୍ୱିକ ଦିଗ ଉପରେ ଆଲୋକପାତ କରନ୍ତି । ପରବର୍ତ୍ତୀ କାଳରେ

---

୧. 'ପାଣ୍ଡୁଲିପି', ୧୯୪୭ ମସିହା, ନାନ୍ଦୀମୁଖ,
୨. 'କବିତା ୧୯୬୨' - ୧୯୬୨; 'ସାହିତ୍ୟ ବିଚାର ଓ ମୂଲ୍ୟବୋଧ' - ୧୯୭୨, ଜେ. ମହାପାତ୍ର, କଟକ

ତାଙ୍କର କାବ୍ୟଗ୍ରନ୍ଥ 'କବିତା ୧୯୬୨' ଓ 'ସାହିତ୍ୟବିଚାର ଓ ମୂଲ୍ୟବୋଧ' (୨) ପ୍ରକାଶପାଏ । 'ପାଣ୍ଡୁଲିପି'ର 'ନାନ୍ଦୀମୁଖ' ତୁଲ୍ୟ 'କବିତା ୧୯୬୨' ର ପୃଷ୍ଠବଂଧ ଓ 'ସାହିତ୍ୟ ବିଚାର ଓ ମୂଲ୍ୟବୋଧ'ର କାବ୍ୟସଂପର୍କିତ ବିଚାର ଆଲୋଚନା ଆଧୁନିକ ଓଡ଼ିଆକବିତା ସଂପର୍କରେ ଏକ ଏକ ଐତିହାସକ ପଦକ୍ଷେପ କହିବା ଯଥାର୍ଥ ହେବ । ଏସବୁ ଆଲୋଚନା କାଳରେ ସଚ୍ଚିଦାନଂଦ ଯଥାର୍ଥ ସାମାଲୋଚକର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି ।

ସଚ୍ଚିଦାନନ୍ଦ ମନେ କରିଛନ୍ତି, କବିତାକୁ ନିତାଂତ 'କବିଜନସୁଲଭ ଉନ୍ମାର୍ଗ ସୌଖୀନ ଚାଲ' ପରିତ୍ୟାଗ କରିବାକୁ ହେବ । କବିତାରେ ଗଦ୍ୟ ଓ ପଦ୍ୟ ପରସ୍ପରର ପାଖାପାଖି ରହିବା ପାଇଁ ବ୍ୟବସ୍ଥା ରହିବ । ଏ ସଂପର୍କରେ ସେ ରବୀନ୍ଦ୍ରନାଥଙ୍କ ପ୍ରଦର୍ଶିତ ମାର୍ଗକୁ ଆଦର୍ଶ ସ୍ଥାନୀୟ ମନେ କରି ପ୍ରାଚୀନ ଓଡ଼ିଆ ସାହିତ୍ୟର ରୁଦ୍ରସୁଧାନିଧି, ସାରଳା ମହାଭାରତ, ଚତୁର ବିନୋଦ ଆଦିର ଅନୁସୃତ ଛନ୍ଦକୁ ଆଦର୍ଶ ସ୍ଥାନୀୟ ମନେ କରିଛନ୍ତି । ଗଦ୍ୟକବିତାର ରଚନା କ୍ଷେତ୍ରରେ Strophic Unity ଉପରେ ସେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସେ ମନେକରିଛନ୍ତି, 'ମୌଖିକ ରୀତି ସହ କାବ୍ୟରୀତିର, ବାକ୍‌ଛନ୍ଦ ସହ କାବ୍ୟିକ ଛନ୍ଦର' 'ଗଦ୍ୟର ପରିଛନ୍ନତା' ସଙ୍ଗେ କାବ୍ୟର 'ଆବେଗସଂଚାରୀ ସ୍ୱଭାବର' ମିଶ୍ରଣ ଆଧୁନିକ କବିତାରେ ଅପରିହାର୍ଯ୍ୟ । ଗଦ୍ୟକବିତା, ମୁକ୍ତକ, ପୟାର ଜାତୀୟ ଛନ୍ଦାଦି, ଯାହା ଏ ଯୁଗର କବିତାର ପ୍ରଧାନ ଆଚାର, କବି ସେ ଦିଗରେ ବିଶେଷ ସଚେତନ ହେବ । 'ଆଖିଦେଖା ଛନ୍ଦ' ଅର୍ଥାତ୍ ଦୃଷ୍ଟିସମ୍ମତ ବର୍ଣ୍ଣମାତ୍ରିକ ଛନ୍ଦ (Alphabetic) ଅପେକ୍ଷା, 'କାନରେ ଶୁଣା ଛନ୍ଦ' ଅର୍ଥାତ୍ ଶ୍ରୁତିସମ୍ମତ ଅକ୍ଷରମାତ୍ରିକ (Syllabic) ବା ଧ୍ୱନିମାତ୍ରିକ (dipthong)ଓ ଉଚ୍ଚାରଣ ପ୍ରାଧାନ୍ୟ ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି । ଉପଧାର ଦ୍ୱିମାତ୍ରିକ ମେଳ ସ୍ଥାନରେ ପ୍ରାଚୀନ ସହଜ ଏକମାତ୍ରିକ 'ମେଳ' ଉପରେ ଓ କବିତାର ଛନ୍ଦକୁ ସାଧୁ ସଂସ୍କୃତ ଶବ୍ଦ ସହ ମୌଖିକ-ଲୌକିକ ଶବ୍ଦର ଭାର-ବହନ-କ୍ଷମ କରିବା ଉପରେ ସେ ଗୁରୁତ୍ୱ ପ୍ରଦାନ କରିଛନ୍ତି । କାବ୍ୟଭାଷାକୁ ସଂସ୍କୃତ ଓ ସାଧୁ ତତ୍‌ସମ ଶବ୍ଦର 'ଆକ୍ରମଣରୁ' ରକ୍ଷାକରି ତାହାକୁ ମୌଖିକ ରୀତି ଅନୁବର୍ତ୍ତୀ ତଥା ହପ୍‌କିନ୍‌ସଙ୍କ Sprung rhythm ଧାରାନୁସାରୀ କରିବାକୁ ପଡ଼ିବ ଏବଂ ଉପଧାର ନାମ ପରିବର୍ତ୍ତନ କରି ତାହାକୁ 'ଉପାନ୍ତ୍ୟସ୍ୱରାନୁପ୍ରାସ' ନାମରେ ନାମିତ କରିବାକୁ ପଡ଼ିବ ବୋଲି ସେ ମତବ୍ୟକ୍ତ କରିଛନ୍ତି । ପ୍ରଗତିଶୀଳ ସାହିତ୍ୟର ଭାଷା ପ୍ରାତ୍ୟହିକ ଜୀବନରେ ବ୍ୟବହାର୍ଯ୍ୟଭାଷାର ନିକଟବର୍ତ୍ତୀ ହେବ ; ସାରଳା ଦାସ ଓ ଜଗନ୍ନାଥ ଦାସଙ୍କ କାଳର ଓଡ଼ିଆ ଭାଷାର ପ୍ରାଣପ୍ରାଚୁର୍ଯ୍ୟକୁ ଫେରାଇ ଆଣିବାକୁ ପଡ଼ିବ । ନୂଆ କବିତାର ମୁକ୍ତି ଲୋଡ଼ା, ଲୋଡ଼ା 'ନୂଆ ଭାଷା, ନୂଆ ମାଧ୍ୟମ, ନୂଆ ଆଙ୍ଗିକ, ନୂତନ ଗତିକୋଣ' । ଉପଧାର ଶୃଙ୍ଖଳାକୁ ସ୍ୱୀକାର କରିବାକୁ ଯାଇ ଉଭୟ ରବୀନ୍ଦ୍ରନାଥ ଓ ରାଧାନାଥ ଶବ୍ଦବୈକଲ୍ୟ ଓ ବିକୃତି, ଅସମାନ କର୍ତ୍ତୃତ୍ୱ ଦୋଷ, ବିରୁଦ୍ଧମତିକାରିତା ଦୋଷ, ଅସିଦ୍ଧ ମେଳର କ୍ରମବୃଦ୍ଧି ଇତ୍ୟାଦି ଦୋଷରେ ଦୁଷ୍ଟ ହୋଇଛନ୍ତି । ନୂତନ କବିତାର କବି ତେଣୁ ମୁକ୍ତଛନ୍ଦ ଉପରେ (Vers libre ବା free verse) ଗୁରୁତ୍ୱ ଆରୋପ କରିବ ଓ speaking voice (ବାକ୍‌ରୀତି) ଏ ଛନ୍ଦର ପରିମାପକ । ଏଦିଗରୁ

ଦାଂଡ଼ିବୃତ୍ତ, ରୁଦ୍ରସୁଧାନିଧି,ଚର୍ଯ୍ୟାଦିର ଗଦ୍ୟପଦ୍ୟାଶ୍ରୟୀ ଛନ୍ଦ ହିଁ ଆଦର୍ଶ ସ୍ଥାନୀୟ, ଯାହାର ଅନୁରୂପ ସଂପ୍ରସାରଣଶୀଳତା ଆଧୁନିକ ପୟାର ଛନ୍ଦରେ ବିଦ୍ୟମାନ । ବର୍ତ୍ତମାନର ଓଡ଼ିଆ କବିତାରେ ପ୍ରଚଳିତ ପୟାରଛନ୍ଦ, ମିଶ୍ରିତ ବାକ୍‌ଛନ୍ଦ, ବାକ୍‌ଛନ୍ଦ, ଗଦ୍ୟଛନ୍ଦ,ଗଦ୍ୟଧର୍ମୀଛନ୍ଦ ର କେତେକ ଉତ୍କୃଷ୍ଟ ନମୁନା ସେ ଗୁରୁପ୍ରସାଦ, ଭାନୁଜୀ, ତ୍ରିବିକ୍ରମ, ବିନୋଦଚଂଦ୍ର, ଜୀବନାନଂଦ ପାଣି ଆଦିଙ୍କ କବିତାରୁ ଉଦ୍ଧାର କରିଛନ୍ତି ।

ନୂତନ କାବ୍ୟ-ଭାଷାର ବନାନ ବିଧି ସଂପର୍କରେ ସଚ୍ଚିଦାନନ୍ଦଙ୍କ କେତେକ ଐତିହାସିକ ସିଦ୍ଧାନ୍ତ ପ୍ରଦାନ କରିଛନ୍ତି । ଭାଷାରୁ ଦୁର୍ବୋଧ୍ୟତା ଦୂରକରି ଉପଧାର ବହିଷ୍କରଣ, ରାଗରାଗିଣୀ ରୂପକ ଶୃଙ୍ଖଳର ଉନ୍ମୋଚନ ଓ ଲିପି ସଂସ୍କାର ଦ୍ୱାରା ତାହାକୁ ସରଳ କରିବାକୁ ପଡ଼ିବ । ଏ କ୍ଷେତ୍ରରେ ସେ ପାଣିନୀଙ୍କର ‘ଅଚୋରହାଭ୍ୟାଁ ଦ୍ୱେ’ ‘ଅନଚିଚ’, ‘ସୋ ଅନୁସ୍ୱାର’ ‘ପଦାନ୍ତମ’ ଇତ୍ୟାଦି ସୂତ୍ରରୁ ପ୍ରମାଣ ପ୍ରଦାନ କରିଛନ୍ତି । ବନାନବିଧିର ପରିବର୍ତ୍ତନ ପ୍ରସ୍ତାବକୁ ୧୯୩୫ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ କିପରି ଗ୍ରହଣ କରିଛନ୍ତି ଓ ରବୀନ୍ଦ୍ରନାଥ-ଶରତ୍‌ଚନ୍ଦ୍ରଙ୍କ ଦ୍ୱାରା ତାହା କିପରି ସୀକୃତି ଲାଭ କରିଛି ତାହା ମଧ୍ୟ ସେ ଉଲ୍ଲେଖ କରିଛନ୍ତି ।

କବିତାର ବକ୍ତବ୍ୟ ସଂପର୍କରେ ସଚ୍ଚିଦାନଂଦ ଗୁରୁତର ମତବ୍ୟକ୍ତ କରିଛନ୍ତି- ‘କବିତାର ଏକମାତ୍ର ବ୍ୟାଖ୍ୟା xxx କବିତା’ । ‘‘ସବୁ ଯୁଗରେ କବିତା ‘କାଂତାସମ୍ମିତ ଉପଦେଶ’ ଭଳି ନିଜର ସୌନ୍ଦର୍ଯ୍ୟ ବଳରେ ପାଠକର ଚିତ୍ତ ଜୟ କରିଥାଏ’’ । ଆଧୁନିକ ଯୁଗ ଗୀତିକବିତାର ଯୁଗ ନୁହେଁ । ‘ଯେଉଁ ସଭ୍ୟତା ଦିନେ ଗୀତିକବିତାର xxx ପ୍ରେରଣା ଯୋଗାଇଥିଲା, ସେ ସଭ୍ୟତା ଆଜି ଆଉ ନାହିଁ । xxx ପୂର୍ବେ ଗୀତିକବିତାର ରଚୟିତା ଯେପରି ନିଜ ଖିଆଲରେ ବାହାର ଜଗତକୁ ଭୁଲିଯାଇ ପାରୁଥିଲା, ସେ ପ୍ରକାର ଦାୟିତ୍ୱହୀନତା ବର୍ତ୍ତମାନ କବିଜୀବନରେ ସମ୍ଭବ ହବ ନାହିଁ । xx ତେଣୁ ଏଯୁଗର ଅଧିକାଂଶ କବିତା ହୁଏତ ଶିକ୍ଷାମୂଳକ (Diadactic) ବା ଆହ୍ୱାନୀ ନୋହିଲେ ତୀକ୍ଷ୍ଣ ବ୍ୟଙ୍ଗରେ ଶାଣିତ ହେବାକୁ ବାଧ୍ୟ ।’ ଆଧୁନିକ କବିତାର ମୁକ୍ତି ଜନସାଧାରଣଂକ ଜୀବନର ସଂସ୍ପର୍ଶରେ ଆସିବା ଦ୍ୱାରା ହିଁ ସମ୍ଭବ । ‘ମଣିଷ ଓ ସମାଜର ବିକାଶଧାରା କିପରି ଦ୍ୱନ୍ଦାତ୍ମକ ପରିଣତି ଓ କ୍ରିୟା, ପ୍ରିକ୍ରିୟା ଭିତରେ ଗତିକରି ଐତିହାସିକ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହେଉଛି, ତାହା ଦେଖାଇବା ଭଳି ଯୋଗ୍ୟତା ଓ କଳାକୁଶଳତା ପ୍ରତ୍ୟେକ ଅଗ୍ରଗାମୀ ସାହିତ୍ୟରେ ଥିବା ଦରକାର’ ।

ପୁନଶ୍ଚ ସେ ମନେ କରିଛନ୍ତି, ନୂତନ ଅର୍ଥ ପ୍ରାଚୀନକୁ ବର୍ଜନ ନୁହେଁ ବରଂ ପ୍ରାଚୀନର ଦୋଷ ଗୁଡ଼ିକର ପରିହାର ପୂର୍ବକ ‘କ୍ଲାସିକାଲ ମନୋଭଙ୍ଗୀ, ସାଦୃଶ୍ୟ ଉଦ୍‌ଘାଟନ ଦ୍ୱାରା ବିଷୟର ସ୍ୱରୂପ ବର୍ଣ୍ଣନାଦି’ ଯାହା ପ୍ରାଚୀନର ଗୁଣ, ତାହାକୁ ଗ୍ରହଣ କରିବାକୁ ପଡ଼ିବ । ନୂତନ କବିତାର ମୂଳ ଲକ୍ଷ୍ୟ ବାସ୍ତବତାର ସ୍ୱରୂପ ଉଦ୍‌ଘାଟନ, ମାତ୍ର ଏ ଉଦ୍‌ଘାଟନ ଫଟୋଗ୍ରାଫ୍ ଉତ୍ତୋଳନ ନୁହେଁ । କବିକୁ ଦ୍ୱନ୍ଦାତ୍ମକ ବସ୍ତୁବାଦ ସହ ବିଜ୍ଞାନ ଓ ମନସ୍ତତ୍ତ୍ୱ ସଚେତନ ହେବାକୁ ପଡ଼ିବ ;

ସଜ୍ଞାନ ଓ ନିଜ୍ଞାନ ମନର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରିବାକୁ ପଡ଼ିବ । 'ମଣିଷର ସବୁ କ୍ଷେତ୍ରରେ ଅଗ୍ରଗତିର ପଦଚିହ୍ନକୁ' 'ଭୃଗୁପାଦ ପରି ନିଜବକ୍ଷରେ ଧାରଣା କରିବ' କବିତା । 'କବିତାକୁ ସବୁଦିଗରୁ ଭାରସାମ୍ୟ ରକ୍ଷାକରି ଚାଲିବାକୁ' ପଡ଼ିବ । କାରଣ ଏ ଶତାବ୍ଦୀର କବିତା ରୋମାଣ୍ଟିସିଜମ୍ ଦିଗରେ ନୁହେଁ କ୍ଲାସିସିଜମ୍ ଆଡ଼କୁ ଗତି କରୁଛି । 'ପୂର୍ଣ୍ଣାଙ୍ଗ ଜୀବନ ନହେଉ ପଛକେ ଅନ୍ତତଃ ସେଇ ଜୀବନର ଏକ କ୍ଷୁଦ୍ର ଭଗ୍ନାଂଶ ଭିତରେ 'ପୂର୍ଣ୍ଣ'ର ଯଥାସମ୍ଭବ ସଂକେତ ଦେବା' ଆଜିର କବିତାର ଧେୟ । ଏଥି ନିମନ୍ତେ ଆଜିର କବିତା ଚିତ୍ରକଳ୍ପର ସହାୟତା ନେଉଛି ଓ Stream of consciousness ର ପରୀକ୍ଷା କରି ସାଫଲ୍ୟ ଅର୍ଜନ କରୁଛି । ସେଥିପାଇଁ ଡେସ୍‌କ୍ରିପସନ ନୁହେଁ ଇନ୍‌ଭୋକେଶନ ହିଁ ନୂତନ କବିତାର ଧେୟ ।

ଗତକାଲିର ଜୀବନ ଅପେକ୍ଷା ବର୍ତ୍ତମାନର ଜୀବନ ଦ୍ୱିଧା, ଦ୍ୱନ୍ଦ୍ୱ, ସଂକଟ ସ୍ୱବିରୋଧାଦିରେ ଜଟିଳ । ତେଣୁ ମହାକାବ୍ୟ- ଯୁଗ ପରି ଜୀବନକୁ ସାମଗ୍ରିକରୂପେ କବିତାରେ ରୂପାୟନ ଆଜି ଅସମ୍ଭବ । ସାହିତ୍ୟକୁ ଜୀବନ ଓ ବାସ୍ତବର କ୍ଷୁଦ୍ର ଭଗ୍ନାଂଶକୁ ନେଇ ସଂତୁଷ୍ଟ ରହିବାକୁ ପଡ଼ିବ ଏବଂ ବିନ୍ଦୁ ମଧ୍ୟରେ ସିଂଧୁର ଯେତେଦୂର ସମ୍ଭବ ବ୍ୟାପକତର ପରିଚୟ ଦେବା ଲାଗି କବି ଚେଷ୍ଟିତ ହେବ । କବିତାରେ ଆନ୍ତର୍ଜାତିକ ଓ ଲୌକିକ ପ୍ରତିମା ପାଖାପାଖି ଠିଆହେବେ, କାରଣ ଏହାହିଁ ସମୟର ଚାହିଦା । 'ଆମେ ସବୁ ଜିନିଷରେ ଆଧୁନିକ ହେବାପରି ସାହିତ୍ୟରେ ମଧ୍ୟ ଆଧୁନିକ ହେବାକୁ ପଡ଼ିବ ।' 'ଅତୀତ ସଚେତନ ହେବା ଆମର ବାସ୍ତବବୋଧର ଏକ ଅବିଚ୍ଛେଦ୍ୟ ଅଂଶ । କିନ୍ତୁ ଅତୀତବାଦୀ ହେବା ବାସ୍ତବତାର ରୋକ୍‌ଠୋକ୍ ଅସ୍ୱୀକାର ଏବଂ ଜୀବନର ପରିପଂଥୀ । ଏଥିରେ ମଂଗଳ ହୁଏନାଇଁ । ଏହା ଏକପ୍ରକାର ଶବପୂଜା ।' ପ୍ରାଚୀନ ସାହିତ୍ୟରେ ପ୍ରଚୁର ଆମଦାନୀ ଥିଲା ଏବଂ ଆମେ ତାକୁ ଯଦି ସ୍ୱୀକାର କରି ଆସିଛୁଁ, ନୂତନ ସାହିତ୍ୟର ନୂତନ ଚିନ୍ତନକୁ ଆମଦାନୀ କହି ଉନ୍ନାସିକ ହେବାର କୌଣସି କାରଣ ନାହିଁ । 'ଏକ ପୁଷ୍କଳ ଐତିହାସିକ ପୁରୋଦୃଷ୍ଟି,ହିଁ ସାହିତ୍ୟକୁ ଭ୍ରଷ୍ଟତା ହାତରୁ ରକ୍ଷା କରିପାରିବ, ବର୍ତ୍ତମାନକୁ ଭବିଷ୍ୟମାନ କରି ଉତ୍ତରଣ ଦିଗରେ ଆଗେଇ ନେଇ ପାରିବ ।'

ନୂତନ କବିତାର ପୃଷ୍ଠଭୂମି, କବିତାର ସ୍ୱର, ଚିତ୍ରକଳ୍ପ, ସାହିତ୍ୟ ବିଚାରର ଧାରା, objective correlative, ଚେତନାର ବିଚ୍ଛେଦ ଓ ସମନ୍ୱୟ, ବିଜ୍ଞାନ ଓ ମନସ୍ତତ୍ତ୍ୱର ଭୂମିକା, ଆଇ.ଏ. ରିଚାର୍ଡ଼ଙ୍କ ବିଚାରଧାରା, ଲିଭିସଙ୍କ ସ୍କୃଟିନି ପରଂପରା, ମାର୍କସୀୟ ଧାରା, ଆର୍ଟ ଓ ପ୍ରୋପାଗଣ୍ଡା, ସ୍ଥିତିବାଦ ଓ ବ୍ୟକ୍ତିର ସଂକଟ, ସାହିତ୍ୟରେ ଅଶ୍ଳୀଳତା ବିଚାର, ବିବିଧ'ବାଦ' ମିଥ୍, ଛଂଦ ଇତ୍ୟାଦି ବିଷୟରେ ସଚ୍ଚିଦାନନ୍ଦ ପର୍ଯ୍ୟାୟକ୍ରମେ ଆଲୋଚନା କରିଛନ୍ତି । ସେ ସାଦୃଶ୍ୟ (analogy) ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସେ ମନେ କରିଛନ୍ତି, ବୁଦ୍ଧିଗ୍ରାହ୍ୟ ଇଲାକାର ବାହାରେ ବାସ୍ତବତାର ଯେଉଁ ଅଂଶ ରହିଛି, ତାହାର ଉପଲବ୍ଧି ପାଇଁ ସହଜାତ ପ୍ରବୃତ୍ତି (Intuition) ର ଏବଂ ସହଜାତ ପ୍ରବୃତ୍ତି ନିମନ୍ତେ ସାଦୃଶ୍ୟ (analogy) ର ପ୍ରୟୋଗ କରାଯିବା

ଆବଶ୍ୟକ । ସାଦୃଶ୍ୟ ସୃଷ୍ଟି ନିମନ୍ତେ ଚିତ୍ରକଳ୍ପହିଁ ସହାୟତା କରିପାରେ । କାରଣ ଚିତ୍ରକଳ୍ପ ହିଁ ବକ୍ତବ୍ୟର ଦୈର୍ଘ୍ୟକୁ ପ୍ରଶସ୍ତକରି ବୁଦ୍ଧିର ଅତିରିକ୍ତ Intuition ସ୍ତରକୁ ଘେନି ଯାଇପାରେ । ବିଶ୍ଳେଷଣ କ୍ରମରେ ସେ ଚିତ୍ରକଳ୍ପବାଦର ଇତିହାସ, ତାହାର ପ୍ରୟୋଗ ଓ ପ୍ରସାର, analogy, intuition ଇତ୍ୟାଦି ସଂପର୍କରେ ଆଲୋଚନା କରି ଟି.ଇ. ହ୍ୟିମ, ଆମି ଲୋଏଲ୍, ଏଲିୟଟ ଇତ୍ୟାଦି ଚିତ୍ରକଳ୍ପବାଦୀ କବିଙ୍କ କବିତାରୁ ଉଦାହରଣମାନ ପ୍ରଦାନ କରିଛନ୍ତି । ଚିତ୍ରକଳ୍ପର ରତ୍ନବତ୍ କାଠିନ୍ୟ, ପ୍ରତ୍ୟକ୍ଷତା, ବାସ୍ତବମୁଖୀନତା, 'ପରିଛନ୍ନେ ସୋଜା' ବକ୍ତବ୍ୟ ଇତ୍ୟାଦି କିପରି ସାଫଲ୍ୟ ଲାଭ କରିଛି, ତାର ବହୁ ଉଦାହରଣ ସେ ଗୁରୁପ୍ରସାଦ, ରମାକାନ୍ତ, ଭାନୁଜୀ, କୃଷ୍ଣଚରଣ ଆଦିଙ୍କ କବିତାରୁ ତଥା ନିଜ କବିତାରୁ ପ୍ରଦାନ କରିଛନ୍ତି । ଚିତ୍ରକଳ୍ପବାଦୀଙ୍କ ଦ୍ୱାରା ୧୯୧୫ ଖ୍ରୀ: ପ୍ରକାଶିତ Imegist poetsର ମୁଖବଂଧରେ ଏଜରା ପାଉଂଡ୍‌ଙ୍କ ପ୍ରଦତ୍ତ ମତର ସପକ୍ଷତା କରି କବିତାର : ୧ - କଥିତ ଭାଷାର ବ୍ୟବହାର ସଙ୍ଗେ ସର୍ବଦା ସଂଭାବ୍ୟ ଶବ୍ଦ ସ୍ଥାନରେ ଯଥାଯଥ (exact word not the near exact) ଶବ୍ଦର ବ୍ୟବହାର, ୨ - ନୂଆଛନ୍ଦ, ବିଶେଷତଃ ମିତ୍ରାକ୍ଷର ଅପେକ୍ଷା ମୁକ୍ତଛନ୍ଦ ଉପରେ ଗୁରୁତ୍ୱ ପ୍ରଦାନ, ୩- ବିଷୟବସ୍ତୁ ନିର୍ବାଚନରେ ପୂର୍ଣ୍ଣ ସ୍ୱାଧୀନତା, ୪- ଚିତ୍ରକଳ୍ପର ପ୍ରୟୋଗ, ୫- ଛାୟାଛନ୍ନ ଅନିର୍ଦ୍ଦିଷ୍ଟ କବିତା ସ୍ଥାନରେ hard and clear କବିତା ପ୍ରଣୟନ, ୬- ଏକାଗ୍ରତାକୁ କବିତାର ପ୍ରାଣଶକ୍ତିରୂପେ ପରିଗ୍ରହଣ ଇତ୍ୟାଦିର ସେ ସପକ୍ଷତା କରିଛନ୍ତି । କଳ୍ପନାକୁ ଯୁକ୍ତିଯୁକ୍ତ ଛାଂଚରେ ଧରି ରଖିବାପାଇଁ ସେ ପ୍ରତୀକ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ଆଲୋଚନାକ୍ରମରେ ସେ ନୂତନ କବିତାର ଭୂୟୋଦର୍ଶନ ଉପରେ ଆଲୋକପାତ କରି ଆଶା ଓ ବିଶ୍ୱାସର ସୂଚନା ଦେଇଛନ୍ତି । ନୂତନ କବିତା ଯେ ଦିନେ ସିଦ୍ଧିଲାଭ କରିବ ଏ ସଂପର୍କରେ ସେ ନିଃସନ୍ଦେହ ହୋଇ କହିଛନ୍ତି : 'ପଥ ଦୁର୍ଗମ ହେଲେ ମଧ୍ୟ ପଥପ୍ରାଂତର ଦେଉଳର ଚୂଡ଼ା ଅଦୃଶ୍ୟ କିମ୍ବା ଝାପ୍‌ସାନୁହେଁ ' ।

ପରିଶେଷରେ ଏତିକି କୁହାଯାଇପାରେ ଯେ ସଚ୍ଚିଦାନଂଦ ହିଁ ଆଧୁନିକ ଓଡ଼ିଆ କବିତାର ବିବିଧ କକ୍ଷର ଉଦ୍‌ଘାଟନ କ୍ଷେତ୍ରରେ ଯଥାର୍ଥରେ 'ଆଭଗାର୍ଦ', ଏବଂ ସେଇ ହିଁ ପ୍ରଥମ କରି ନୂତନ କବିତାକୁ ଅବମୂଲ୍ୟାୟନ ହାତରୁ ନିଷ୍କୃତି ପ୍ରଦାନକଲେ । ଆଧୁନିକ କବିତାର ସୃଷ୍ଟି ଓ ସମୀକ୍ଷା କ୍ଷେତ୍ରରେ ବହୁକବି ଓ ସମାଲୋଚକ ଇତିହାସରେ, ସଚ୍ଚିଦାନଂଦଂକ ପୂର୍ବରୁ ଓ ପରେ, ସ୍ମରଣୀୟ ହୋଇ ରହିବେ ସତ୍ୟ, ମାତ୍ର ଅଗ୍ରପୂଜା ଲାଭର ଅଧିକାର ଚିରଦିନ ସଚ୍ଚିଦାଂନଂଦଂକର ହିଁ ରହିବ ନିଃସଂଦେହରେ ।

୧୯୫୫ ମସିହାରେ ଶ୍ରୀ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ସଂପାଦନାରେ ପ୍ରକାଶପାଏ 'ନୂତନ କିବିତା' । କବି ଗୁରୁପ୍ରସାଦ ଓ ଭାନୁଜୀଙ୍କ କବିତାର ମିଳିତ ସଂକଳନ । ସଂକଳନର ମୁଖବଂଧରେ ଶ୍ରୀ ମହାନ୍ତି ପାଶ୍ଚତ୍ୟ କାବ୍ୟ-ଚିନ୍ତା ସହ ନୂତନ କବିତାର ଧାରା ସଂପର୍କରେ ଆଲୋଚନା କରନ୍ତି ନୂତନ କବିତାର ଆତ୍ମା, ତାର ଶିଳ୍ପବିଧି, ତାର ବିଶ୍ୱ-ସଂପୃକ୍ତି ଆଦି ଆଲୋଚନା

ପୂର୍ବକ ସଚ୍ଚିଦାନଂଦୀୟ ପ୍ରଭାବମୁକ୍ତ ଓଡ଼ିଆ କବିତାର ଧାରାକୁ ସେ ସ୍ପଷ୍ଟ କରିବାକୁ ପ୍ରୟାସ କରନ୍ତି । ପରବର୍ତ୍ତୀ କାଳରେ ଏ ମୁଖବଂଧ ସମାଲୋଚକଙ୍କ ଦ୍ୱାରା ଉଭୟ ଗୃହୀତ ଓ ନିଗୃହୀତ ହୋଇଛି ଓ ନାନା ବିତର୍କ ସୃଷ୍ଟି କରିଛି । ତଥାପି କାଳଗତ ଚାହିଦା ଦୃଷ୍ଟିରୁ ଏ ମୁଖବଂଧର ଗୁରୁତ୍ୱ ସର୍ବଦା ସ୍ୱୀକାର୍ଯ୍ୟ ।

କବି ଯଦୁନାଥ ଦାଶ ମହାପାତ୍ର ଓ କବି ବ୍ରଜନାଥ ରଥଙ୍କ ଉଦ୍ୟମରେ, 'ଓଡ଼ିଆ ପତ୍ରିକା ପ୍ରଚାର ସମିତି' ଆନୁକୂଲ୍ୟରେ, ୧୯୫୭ ମସିହାରେ, ବାଲେଶ୍ୱରର 'ଟାଉନ ପ୍ରେସ'ରୁ ପ୍ରକାଶ ପାଏ 'ଧରିତ୍ରୀ' କବିତା ସଂକଳନ - ବତିଶ ଜଣ କବିଙ୍କର ଏକାଅଶିଟି କବିତାର ସମାହାର । ଏହାର ମୁଖବଂଧ ଲେଖନ୍ତି ତତ୍‌କାଳୀନ ତରୁଣକବି ଓ ସମାଲୋଚକ ଶ୍ରୀ ଚିନ୍ତାମଣି ବେହେରା । ଏହାଙ୍କର ବିଶ୍ଳେଷଣ-ପଦ୍ଧତି ଏତେ ସୂକ୍ଷ୍ମ, ସଂତୁଳିତ, ତଥା ନିରପେକ୍ଷ ଯେ ସମାଲୋଚକ ଶ୍ରୀ ଦାଶରଥୀ ଦାସ ତାଙ୍କୁ ଶ୍ରଦ୍ଧାରେ ସ୍ୱର୍ଗତ ମାୟାଧର ମାନସିଂହଙ୍କ ଯଥାର୍ଥ ଉତ୍ତର ସାଧକ' (୩) ରୂପେ ଚିହ୍ନିତ କରିଛନ୍ତି । ଶ୍ରୀ ବେହେରା କବିତାର ସମୀକ୍ଷା ଓ ଆଲୋଚନା କାଳରେ ଉଭୟ ସଚ୍ଚିଦାନଂଦ ଓ ମାୟାଧରଙ୍କ ତୁଲ୍ୟ କବିତାର ସର୍ବବିଧ ଦିଗର-ତାର ସମ୍ଭାବନା ଓ ସିଦ୍ଧି, ଦୋଷ ଓ ଦୁର୍ବଳତା ଉଦ୍‌ଘାଟନ କରିବାର ପ୍ରୟାସ କରିଛନ୍ତି । ପରବର୍ତ୍ତୀକାଳରେ ତାଂକର କବିତା ସଂପର୍କିତ ଆଲୋଚନା ଗୁଡ଼ିକ 'କାବ୍ୟ ଓ କାଳାକାର', 'ତୃତୀୟ ଚକ୍ଷୁ' 'ସାହିତ୍ୟଚିନ୍ତା' ଆଦି ପୁସ୍ତକରେ ସ୍ଥାନିତ ହୋଇଛି ।

ଆଧୁନିକ କବିତାର ସମାଲୋଚନା ଅବସରରେ ଶ୍ରୀ ବେହେରା ବହୁ ଗୁରୁତର ସମସ୍ୟାର ସମାଧାନ କରିବା ସହ ବହୁ ନୂତନ ତଥ୍ୟର ଅବତାରଣା କରିଛନ୍ତି । 'ଆଧୁନିକତା'ର ସଂଜ୍ଞା ନିରୂପଣ ବେଳେ ଜାତ ହେଉଥିବା କାଳଗତ ସମସ୍ୟା ଓ ସଂଶୟ ସଂପର୍କରେ ଆଲୋଚନା କରି ସେ କହିଛନ୍ତି କାଳଜୟୀ ଶିଳ୍ପୀ 'ନିଜ କାଳର ପରିଧି ମଧ୍ୟରେ କାଳାତୀତ ମାନବିକ ଚେତନା ପ୍ରବାହର ଉପଲବ୍ଧି ପାଇଁ xxx ସର୍ବଦା ସକ୍ରିୟ ଥାଏ' । ତାଙ୍କ ଦୃଷ୍ଟିରେ 'କବି ହିସାବରେ କେହି ବଡ଼ ବା ସାନ ହୋଇ ନଥାନ୍ତି, କିମ୍ବା ବିଭିନ୍ନ କବିର ସ୍ରଷ୍ଟାମାନସ ମଧ୍ୟରେ ଉଚ୍ଚ ନୀଚର ତାରତମ୍ୟ କିଛି ନଥାଏ ; କିନ୍ତୁ ପ୍ରତିଭାର ତାରତମ୍ୟ ଅନୁଯାୟୀ ଶିଳ୍ପକ୍ଷେତ୍ରରେ ଅଭିବ୍ୟକ୍ତିର ଯେଉଁ ପାର୍ଥକ୍ୟ ବା ତାରତମ୍ୟ ଘଟିଥାଏ, ତାକୁ ନେଇ କବିମାନଙ୍କର ଶ୍ରେଣୀ ନିୟନ୍ତ୍ରଣ ସାଧାରଣତଃ କରାଯାଇଥାଏ ।'

ଆଧୁନିକ ଇଂରାଜୀ କାବ୍ୟ-ସାହିତ୍ୟର ବିଶିଷ୍ଟ କବିଙ୍କ ଶିଳ୍ପରେ ଏଯୁଗର ନୈରାଶ୍ୟ, ସ୍ୱପ୍ନଭଙ୍ଗ, ବ୍ୟର୍ଥତା, ଧର୍ମବୋଧ ଶୂନ୍ୟତା ସହ ଯୁଗର ବାତାବରଣକୁ ପରିବର୍ତ୍ତିତ କରିବାର ସକ୍ରିୟ କାବ୍ୟ-ପ୍ରୟାସ କିପରି ଲକ୍ଷିତ, ତାହା ସେ ଇଏଟ୍‌ସ୍, ଏଲିୟଟ ଆଦିଙ୍କ କବିତାରୁ ପ୍ରମାଣ କରିଛନ୍ତି ଏବଂ 'ଧରିତ୍ରୀ'ରେ ସମନ୍ୱିତ କବିବୃନ୍ଦଙ୍କ ଠାରେ ଯୁଗଧର୍ମର ଏଇ ସର୍ବବିଧ ଲକ୍ଷଣ କିପରି ପ୍ରତିବିମ୍ବିତ ତାହା ମଧ୍ୟ ପ୍ରମାଣ କରିଛନ୍ତି । ବିଶ୍ୱ-ସାହିତ୍ୟର ଦୁଇ ମୁଖ୍ୟ ଧାରା-ରୋମାଣ୍ଟିସିଜମ୍ ଓ ରିଆଲିଜମ୍

(୩)- 'ନାନା ନିବନ୍ଧ', ଅଗ୍ରଦୂତ, କଟକ, ୧୯୯୨, ପୃଷ୍ଠା-୨୯

ମଧ୍ୟରେ କିପରି ପ୍ରୟୋଗବାଦ, ପ୍ରତୀକବାଦ, ରହସ୍ୟବାଦ (mysticism), ଅତିବାସ୍ତବବାଦ, ମାନବବାଦ, ଅସ୍ତିତ୍ୱବାଦ ଇତ୍ୟାଦି ସହ ସାମ୍ୟବାଦୀଧାରା ପ୍ରବାହିତ, ତାହାର ବିଚାର-ଆଲୋଚନା ସେ କରିଛନ୍ତି । ସେ ମନେକରିଛନ୍ତି, କାବ୍ୟ ଯେଉଁ ଧାରାର ହେଉ ନାଁ କାହିଁକି 'ପ୍ରତ୍ୟକ୍ଷ ପ୍ରଚାରମୂଳକ କାମନା-ବାସନା, ଶିଳ୍ପର କୌଣସି କ୍ଷେତ୍ରରେ ସ୍ପୃହଣୀୟ ନୁହେଁ ଉଚ୍ଚକୋଟୀର କବି 'ଆଦର୍ଶ ଓ ବାସ୍ତବର ସମ୍ମିଶ୍ରଣରେ' କାଳାତୀତ କଳା ସୃଷ୍ଟି କରନ୍ତି ।

କାବ୍ୟର ଆଙ୍ଗିକ ସଂପର୍କରେ ସେ ମତ ଦେଇଛନ୍ତି ଯେ, 'କାବ୍ୟର ଗୋଟିଏ ପ୍ରଧାନ ଆଶ୍ରୟ ହେଲା ତାର ଉପମା ଓ ରୂପକ । ଏହା କବିତାକୁ ଦିଏ ସ୍ଥାନୀୟ ବୈଶିଷ୍ଟ୍ୟ (Local colour) ଓ ସଜୀବ ହାୱା । ଏଇ ଅଂଶର ପ୍ରକାର ଭେଦରେ କାବ୍ୟର ଯୁଗ ନିର୍ଣ୍ଣିତ ହୋଇଥାଏ' କାଳଜୟୀ ଶିଳ୍ପୀ ପରୀକ୍ଷା-ପ୍ରୟୋଗ ମଧ୍ୟଦେଇ ନୂତନ ରୂପକଳ୍ପ ଓ ଛନ୍ଦ ସୃଷ୍ଟି କରିବ । ପାଠକ-ପ୍ରାଣର ଭାବନାକୁ ରୂପକଳ୍ପ ଦିଗନ୍ତବିସ୍ତାରୀ କରିବା ସଙ୍ଗେ ସଙ୍ଗେ ମନ ମଧ୍ୟରେ ଚିନ୍ତା ଓ ଉଚ୍ଛ୍ୱାସଗତ ଜଟିଳତାର ଏକ ଭାବମୂର୍ତ୍ତି ସୃଷ୍ଟି କରିବାକୁ ସମର୍ଥ ହୁଏ । ପ୍ରାଚୀନ ଯୁଗ ଥିଲା ଛନ୍ଦର ଯୁଗ ;ତେଣୁ ସେ ଯୁଗର କବି 'ଛନ୍ଦର ଘୋଡ଼ା' ଉପରେ ବସି ଆକାଶରେ ଉଡ଼ିବାକୁ ଗୌରବାବହ ମନେକରୁଥିଲା, ' କିନ୍ତୁ ଆଜିର କବି ପଦାତିକ ସୈନ୍ୟ ପରି ପୃଥିବୀର ମାଟି ଉପରେ ହିଁ ଚାଲିବାକୁ ଓ ସଂଗ୍ରାମ କରିବାକୁ ବେଶି ପସନ୍ଦ କରେ । ତେଣୁ ତାର କବିତା ଛନ୍ଦର ପକ୍ଷୀରାଜଘୋଡ଼ାକୁ ବିଦାୟ ଦେଇ ଗଦ୍ୟ ସାହାଯ୍ୟରେ ପାଦରେ ଚାଲିଚାଲି ଯିବାକୁ ଅଧିକ ଯୁଗୋପଯୋଗୀ ବୋଲି ସ୍ଥିର କରିଛି ।' ଗଦ୍ୟଛନ୍ଦ ଓ ମୁକ୍ତଛନ୍ଦ ସାହାଯ୍ୟରେ ଭାବର ସ୍ୱଚ୍ଛନ୍ଦତା ଅକ୍ଳେଶରେ ରକ୍ଷିତ ହୋଇ ପାରିଥାଏ ; ମାତ୍ର ଏ ଛନ୍ଦର ପ୍ରୟୋଗକ୍ଷେତ୍ରରେ ବଳିଷ୍ଠ ଶିଳ୍ପକ୍ଷମତାର ଆବଶ୍ୟକତା'କୁ ସେ ସ୍ୱୀକାର କରିଛନ୍ତି ।

କାଳକ୍ରମେ କବିତାର ଆଲୋଚନା କ୍ରମରେ ଶ୍ରୀ ବେହେରା ଅତ୍ୟନ୍ତ ନିରପେକ୍ଷ, ସୂକ୍ଷ୍ମ ଓ ସନ୍ତୁଳିତ ରୂପେ ଓଡ଼ିଆ କବିତାର ତଥା ଅନ୍ୟାନ୍ୟ କବିତାର ବହୁ ସିଦ୍ଧ-ସାଧକ -ରାଧାନାଥ, ମାୟାଧର, ସଚ୍ଚିଦାନଂଦ, ପ୍ରାଣକୃଷ୍ଣ, ଗଡ଼ନାୟକ, ରବୀନ୍ଦ୍ରନାଥ ଇତ୍ୟାଦିଙ୍କ କବିତାର ସମାଲୋଚନା କରି ନିଜର ସମାଲୋଚନା ସ୍ୱାତଂତ୍ର୍ୟ ପ୍ରତିପାଦନ କରିଛନ୍ତି, ଯାହା ଓଡ଼ିଆ ସମାଲୋଚନା କ୍ଷେତ୍ରରେ ସ୍ମରଣୀୟ ହୋଇ ରହିବ ।

ଓଡ଼ିଆ କବିତାର ସମାଲୋଚନା କ୍ଷେତ୍ରରେ ଶ୍ରୀ ଖଗେଶ୍ୱର ମହାପାତ୍ରଙ୍କ ସ୍ଥାନ ସ୍ୱତନ୍ତ୍ର । ଏ ସମାଲୋଚକ ମିତଭାଷୀ ଏବଂ ଏହାଙ୍କର ବିଶ୍ଳେଷଣ ପଦ୍ଧତି ସୂକ୍ଷ୍ମ, ବିଜ୍ଞାନ-ସମ୍ମତ । 'ନବ ପର୍ଯ୍ୟାୟ' ର ଓଡ଼ିଆ କବିତାର 'ସୀମା ଓ ସମ୍ଭାବନାକୁ' ନେଇ ଶ୍ରୀ ମହାପାତ୍ର ଅତି ଗୁରୁତ୍ୱପୂର୍ଣ୍ଣ ମନ୍ତବ୍ୟମାନ ପ୍ରଦାନ କରିଛନ୍ତି । ଆଧୁନିକ ସାହିତ୍ୟର ଦ୍ୱିତୀୟ ପର୍ଯ୍ୟାୟର ଉନ୍ମେଷ କାଳରୂପେ ସ୍ୱାଧୀନତା ପ୍ରାପ୍ତିର ଉତ୍ତରକାଳକୁ ହିଁ ସେ ସ୍ଥୂଳତଃ ଗ୍ରହଣ କରିଛନ୍ତି । ସେ ମନେକରିଛନ୍ତି, 'ଏ ମଧ୍ୟଯୁଗୀୟ ବସ୍ତୁନିଷ୍ଠତା ସଂଗେ ରୋମାଣ୍ଟିକ କାବ୍ୟଧାରାର ଆତ୍ମକୈନ୍ଦ୍ରିକତାର ସାନ୍ଦ୍ର ସମନ୍ୱୟ

ଦ୍ୱାରା ରଚିତ ହେଲା କବିତାର ନୂତନ ସୂତ୍ର ବହିରଂଗ ସଂଶ୍ଲେଷଣ । ତାଂକ ମତରେ ଆଧୁନିକ କବିର ଭାଷା ଏକ 'ସ୍ୱାଭିପ୍ରେତ ଭାଷା ' । 'ନାନା ବ୍ୟକ୍ତିଗତ ପ୍ରତୀକ, ଅନୁଷଂଗ ଓ ଚିତ୍ରକଳ୍ପ, ପଦର ଅର୍ଥବିକୃତି, ଶବ୍ଦର ପ୍ରତିଷ୍ଠିତ ଅର୍ଥ ଉପରେ ନୂତନ ଅର୍ଥାରୋପ, ନାମବାଚକ ବିଶେଷ୍ୟପଦର ଅର୍ଥାନୁସାରୀ ପ୍ରୟୋଗ, ଦେଶୀ ବିଦେଶୀ ସାଧୁ ଅସାଧୁ, ଶବ୍ଦ ସଂଯୋଜନାରେ ତାଂକର ଶବ୍ଦ ସୃଷ୍ଟି, xxx ବକ୍ତବ୍ୟରେ ଅଚ୍ଛେଦ୍ୟ ସଂକ୍ଷେପଣ ଓ ଅନାକାଂକ୍ଷିତ ଉଲ୍ଲମ୍ଫନ, xxx କ୍ରିୟାର ପଦଧର୍ମୀ ପୂର୍ଣ୍ଣ ପ୍ରୟୋଗ, ବିରାମ-ଚିହ୍ନର ବିଭ୍ରାନ୍ତିକର ବ୍ୟବହାର, ପଂକ୍ତି ସଜ୍ଜାରେ ପର୍ଯ୍ୟାୟାନୁବନ୍ଧର ଅଭାବ, ବିଭିନ୍ନ ସାହିତ୍ୟ ଓ ସଂସ୍କୃତିରୁ ଉଦ୍ଧୃତ ଓ ପ୍ରସଙ୍ଗ ନିର୍ଦ୍ଦେଶକ ଇତ୍ୟାଦି ଯାହା ଆଧୁନିକ କବିତାର ମୌଳ ଲକ୍ଷଣ, ସେସବୁ ସଂପର୍କରେ ସେ ସୂକ୍ଷ୍ମରେ ସୂଚନା ପ୍ରଦାନ କରିଛନ୍ତି ।

ଆଧୁନିକ କବିତାର ଭାଷା ଏକ ସ୍ୱାଭିପ୍ରେତ ଭାଷା (A language within a language) ହେବାର କାରଣ ସ୍ୱରୂପ ସେ କବିର ଜଟିଳ ମାନସିକ ଅନ୍ତର୍ଦ୍ୱନ୍ଦ୍ୱ ଓ କ୍ଷିପ୍ର କାବ୍ୟାନୁଭୂତିକୁ ଗ୍ରହଣ କରିଛନ୍ତି । ଓଡ଼ିଆ ଭାଷାର ଧ୍ୱନିତତ୍ତ୍ୱର ସ୍ୱାତଂତ୍ର୍ୟ ସମ୍ପର୍କରେ ସୂଚନା ଦେଇ ସେ କହିଛନ୍ତି ଯେ 'ଧ୍ୱନିଜ୍ଞାନ ଅଭାବରୁ xxx ଛନ୍ଦେ ଦୋଷ' ସୃଷ୍ଟି ହୋଇଥାଏ ଏବଂ 'ବହୁ ପ୍ରବୀଣ ଓଡ଼ିଆ କବି ଏଥିରୁ ମୁକ୍ତ' ନଥିବା କଥା ସେ ନିର୍ଭୀକ ଭାବେ ପ୍ରକାଶ କରିଛନ୍ତି । ଭାଷାର ପ୍ରାଚୁର୍ଯ୍ୟ ବୃଦ୍ଧି ନିମନ୍ତେ ସେ କେତୋଟି ପ୍ରସ୍ତାବ ଆଗତ କରିଛନ୍ତି ; 'ରୀତିବାଦୀ କବିମାନଙ୍କର ଦ୍ୱାରା ନିର୍ବାସିତ ପ୍ରାଚୀନ ରଚନାର ପ୍ରିୟ ପ୍ରୟୋଗଗୁଡ଼ିକର ପୁନରୁଦ୍ଧାର, ଅପରାପର ଭାଷାରୁ ପାରିଭାଷିକ ଶବ୍ଦ ଓ ରୂଢ଼ି ପ୍ରୟୋଗ ସଂଗ୍ରହ, ଔପଭାଷିକ ଶବ୍ଦ ବ୍ୟବହାର' । ତାଙ୍କ ମତରେ ଓଡ଼ିଆ ଆଞ୍ଚଳିକ ଭାଷାରେ ଅଗଣିତ ମୂଲ୍ୟବାନ ଶବ୍ଦ ଅଛି, ଯାହା ଷ୍ଟାଣ୍ଡାର୍ଡ ଭାଷାରେ ନାହିଁ । ଏ ସବୁ ଶବ୍ଦ କାବ୍ୟର ଭାବ ଚିତ୍ର ବ୍ୟକ୍ତ କରିବା ନିମନ୍ତେ ବ୍ୟବହାର କରାଯାଇପାରେ ।

ଶ୍ରୀ ମହାପାତ୍ର ପ୍ରଥମ ସମାଲୋଚକ, ଯିଏ କବି ରାଧାନାଥ ଓ କବି ମାୟାଧରଙ୍କ କବିତାକୁ ସୌନ୍ଦର୍ଯ୍ୟତାତ୍ତ୍ୱିକ ଦିଗରୁ ବିଶ୍ଳେଷଣ କରିଛନ୍ତି । କିନ୍ତୁ ତାଂକ ସମାଲୋଚନାର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ଓଡ଼ିଆ କବିତାର ଛନ୍ଦର ସ୍ୱତନ୍ତ୍ର ବିଶ୍ଳେଷଣ । ଆଧୁନିକ ଓଡ଼ିଆ ଛନ୍ଦର ପରିଭାଷା, ଛନ୍ଦର ପ୍ରୟୋଗାତ୍ମକ ବିଚାର, ତାହାର ରୂପତତ୍ତ୍ୱ ଆଦି ବିଷୟରେ ସେ ଏକ ପରିଚ୍ଛନ୍ନ ଦୃଷ୍ଟିଭଙ୍ଗୀ ପ୍ରକାଶ କରିଛନ୍ତି । ଛନ୍ଦ ସଂପର୍କରେ ଆଲୋଚନା କରିବା ଅବକାଶରେ ସେ ପ୍ରଖ୍ୟାତ ଛାନ୍ଦସିକ ପ୍ରବୋଧ ଚନ୍ଦ୍ର ସେନ, ରବୀନ୍ଦ୍ରନାଥ, ଆଇ.ଏ.ରିଚାର୍ଡ୍ସ ଓ ସୁରେନ୍ଦ୍ର ମହାନ୍ତି ଇତ୍ୟାଦିଙ୍କର ମତାମତର ସୂଚନା ଦେଇ ଅକ୍ଷରବୃତ୍ତ, ମାତ୍ରାବୃତ୍ତ, ସ୍ୱରବୃତ୍ତ, ଦଳ, କଳା, ମାତ୍ରା, ଇତ୍ୟାଦି ସମ୍ପର୍କରେ ଧାରଣାକୁ ପ୍ରାଞ୍ଜଳ କରିଛନ୍ତି । Stanza, Rhythim, Rhyme, Pause, ଇତ୍ୟାଦି ନିମନ୍ତେ ସେ ପାରିଭାଷିକ ଶବ୍ଦରୂପେ ସ୍ତବକ, ସ୍ପନ୍ଦ,ମେଳ ଇତ୍ୟାଦି ଶବ୍ଦ ଗ୍ରହଣ କରିଛନ୍ତି । ଓଡ଼ିଆଛନ୍ଦର ରୂପତତ୍ତ୍ୱ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ପୂର୍ବକ ସେ ଛନ୍ଦର ପ୍ରୟୋଗାତ୍ମକ ବିଚାର କରିଛନ୍ତି

ଏବଂ କବି ସଚ୍ଚିଦାନଂଦଂକ 'ପ୍ରତିମା ନାୟକ' କବିତାକୁ ମଡ଼େଲ ରୂପେ ଗ୍ରହଣ କରି କବିତାରେ ବୈଜ୍ଞାନିକ ଦୃଷ୍ଟିକୋଣରୁ ଛନ୍ଦ ବିଶ୍ଳେଷଣ ପଦ୍ଧତିର ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି ।

ଆଧୁନିକ କବିତାର ସମାଲୋଚନା କ୍ଷେତ୍ରରେ ବର୍ତ୍ତମାନ ସବୁଠାରୁ ସକ୍ରିୟ ସମାଲୋଚକ ଭାବେ ଶ୍ରୀ ଦାଶରଥି ଦାସଙ୍କ ନାମ ଉଲ୍ଲେଖ କରାଯାଇପାରେ । ଶ୍ରୀ ଦାସଙ୍କ ଦ୍ୱାରା ଉତ୍କଳ ବିଶ୍ୱବିଦ୍ୟାଳୟଙ୍କ ଅଧୀନରେ ଡି.ଲିଟ୍. ନିମନ୍ତେ ପ୍ରସ୍ତୁତ ଗବେଷଣା ନିବନ୍ଧଟି 'ଚିହ୍ନାମାଟି, ଅଚିହ୍ନା ଆକାଶ' ନାମରେ ୧୯୮୭ ମସିହାରେ 'ଫ୍ରେଣ୍ଡସ୍ ପବ୍ଲିଶର୍ସ'ଙ୍କ ଦ୍ୱାରା ମୁଦ୍ରିତ ହୋଇଛି । ଏତଦ୍‌ବ୍ୟତୀତ 'ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ', 'ମୃତ୍ୟୁଲୋକରେ ଋତୁ ସପ୍ତମ', 'ବିବିଧ ସମାଲୋଚନା', 'ନାନା ନିବନ୍ଧ' ଆଦି ତାଂକର କେତୋଟି ଉପାଦେୟ ଗ୍ରନ୍ଥ । ଆଧୁନିକ ଓଡ଼ିଆ କବିତା ଉପରେ ଶ୍ରୀ ଦାସ ବହୁଦିଗରୁ ଆଲୋକପାତ କରିବା ସଙ୍ଗେ ସଙ୍ଗେ କବି ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ ମିଶ୍ର, ମାୟାଧର ମାନସିଂହ ଆଦିଙ୍କ କବିତା ସଂପର୍କରେ ଗଭୀର ଆଲୋଚନା ଓ ବିଶ୍ଳେଷଣ କରିଛନ୍ତି ଏବଂ ବିଶ୍ଳେଷଣ ପଦ୍ଧତିରେ ତିନୋଟି ଦିଗ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି - ଭାବ, ଭାଷା ଓ ଶିଳ୍ପାୟନ । ଆଧୁନିକ କବିତାରେ ଚିତ୍ରକଳ୍ପର ପ୍ରୟୋଗ ସଂପର୍କରେ ଆଲୋଚନାକରି ତାହାର ପ୍ରାଚୀନ ସ୍ୱରୂପ ଉଦ୍‌ଘାଟନ ପୂର୍ବକ ବିବିଧ କବିତାରେ ଏହାର ପ୍ରସାର ପ୍ରୟୋଗ, ପ୍ରତୀକ ଓ ମେଟାଫର ସହ ତାର ସଂଯୋଗ, ତାହାର ସଂଜ୍ଞା ଓ ସୀମାସରହଦ ନିର୍ଣ୍ଣୟ କରିବାର ସଫଳ ପ୍ରୟାସ ମଧ୍ୟ କରିଛନ୍ତି ।

ସମାଲୋଚକ ଶ୍ରୀ ଦାସଙ୍କ ଠାରେ ଶ୍ରୀ ଚିନ୍ତାମଣି ବେହେରା ଓ ଶ୍ରୀ ମାୟାଧର ମାନସିଂହଙ୍କ ତୁଲ୍ୟ ନିରପେକ୍ଷ ଦୃଷ୍ଟିଭଂଗୀ ସହ ଏକ ସୃଜନଶୀଳ ମନୋବୃତ୍ତି ବର୍ତ୍ତମାନ ଥିବାରୁ ଏହାଙ୍କର ସମାଲୋଚନା ବିଜ୍ଞାନସମ୍ମତ ଅଥଚ ସମ୍ବେଦନଶୀଳ ହୋଇପାରିଛି । ସେ ମନେ କରିଛନ୍ତି 'ସାମୟିକ ଓ ସମୟାତୀତର ସମନ୍ୱିତ ଦୃଷ୍ଟିକୋଣ ହିଁ 'ଇତିହାସ ବୋଧ' । 'ବ୍ୟକ୍ତିଗତ ମନ ଅପେକ୍ଷା' 'ସ୍ୱକୀୟ ଓ ସ୍ୱଦେଶ ମନ' ଅଧିକ ଗୁରୁତ୍ୱ ପୂର୍ଣ୍ଣ ।' କବିତାରେ କବି କିପରି ନୈର୍ବ୍ୟକ୍ତିକ ହୋଇଉଠେ ସେ ସଂପର୍କରେ ଶ୍ରୀ ଦାସ କହିଛନ୍ତି, 'ବ୍ୟକ୍ତିଗତ ମନ ଯେବେ କାଳଚେତନା ଓ ଇତିହାସବୋଧ ସହ ଯୁକ୍ତ ହୁଏ , ତେବେ ବ୍ୟକ୍ତିଗତ ଅନୁଭୂତିର ବିସର୍ଜନ ଘଟେ । ବ୍ୟକ୍ତିତ୍ୱର ଏହି ନିରନ୍ତର ବିସର୍ଜନ ଫଳରେ ନୈର୍ବ୍ୟକ୍ତିକ ଶିଳ୍ପ ସମ୍ଭବ ହୁଏ' । ଆଧୁନିକ କବିତାରେ ପ୍ରଚଳିତ ମିଥ୍ ସମ୍ପର୍କରେ ଶ୍ରୀ ଦାସ ମତ ଦେଇଛନ୍ତି ଯେ 'ଯେଉଁ କାହାଣୀ ସହିତ ରିଚୁଆଲର ସମ୍ପର୍କ ପ୍ରମାଣିତ ହୋଇପାରେ ନାହିଁ ତାକୁ ନୃତତ୍ତ୍ୱବିଦ୍ ମାନେ ମିଥ୍ କହିବାକୁ ପରାଂମୁଖ ହୋଇଥାନ୍ତି' । ମିଥ୍ ସଂପର୍କୀୟ ପାଠକୀୟ ଧାରଣାକୁ ପ୍ରାଞ୍ଜଳ କରି ସେ କହିଛନ୍ତି, 'ଯେଉଁସବୁ ଆଖ୍ୟାନ ମଧ୍ୟରେ ଅଲୌକିକତ୍ୱ ଥିବ ଓ ସାଙ୍କେତିକ ହୋଇଥିବ, କେବଳ ତାକୁହିଁ ମିଥ୍ କୁହାଯିବ' । ଆଧୁନିକ କବିତାରେ 'କନ୍‌ଟ୍ରାଷ୍ଟ ଓ ପାରାଡକ୍ସ'ର ପ୍ରୟୋଗ, ଶବ୍ଦାନୁଷଙ୍ଗ, ପ୍ରତୀକ ଇତ୍ୟାଦି ସଂପର୍କରେ ସେ ପ୍ରାଞ୍ଜଳଭାବେ ଆଲୋଚନା କରିଛନ୍ତି । ଆଧୁନିକ କାଳରେ 'ଗଦ୍ୟକବିତା'ର ଜନ୍ମ ଓ ବିକାଶ ହେତୁ 'ପଦ୍ୟ'ପ୍ରତି

'କବିତା'ର ବିମୁଖତା, ପଦ୍ୟ ଓ କବିତା ମଧ୍ୟସ୍ଥ ପାର୍ଥକ୍ୟ, କବିତାର ପଦ୍ୟାତ୍ମିକତା ଇତ୍ୟାଦି ନାନା ଗୂଢ଼ ବିଷୟରେ ସେ ଆଲୋଚନା କରିଛନ୍ତି । କବିତା କିପରି ପାଠକ ଓ ଶ୍ରୋତାଙ୍କୁ ଅନ୍ତର୍ଜଗତର ଏକ ରୂପଲୋକରେ ମୁକ୍ତି ଦିଏ ଓ ମଣିଷର ଅବଚେତନକୁ ମୁଗ୍ଧ ବିହ୍ୱଳ କରାଏ, ଶ୍ରୀ ଦାସ ତାହାର ସୂଚନାଦାନ ପୂର୍ବକ ବିଶେଷ ସ୍ତରରେ କବି ଓ ପାଠକର ଏକାତ୍ମ୍ୟ ହେବା ବିଷୟ ଦର୍ଶାଇଛନ୍ତି । କାବ୍ୟାସ୍ୱାଦନ କ୍ଷେତ୍ରରେ ସେ 'ମନନ ଓ ଅନୁଶୀଳନ'ର ଭୂମିକାକୁ ସ୍ୱୀକାର କରିଛନ୍ତି । ତତ୍ ସଙ୍ଗସଙ୍ଗେ ସେ ନୂତନ କବି ଓ କବିତାର ଦୋଷ ଦୁର୍ବଳତା ସଂପର୍କରେ ନିରପେକ୍ଷ ମତାମତ ପ୍ରଦାନ କରିଛନ୍ତି ।

ସମାଲୋଚକ ଶ୍ରୀ ଦୀପକ ମିଶ୍ର ନିଜେ କବି ; ତେଣୁ ଆଧୁନିକ କବିତାର ଧେୟ ଓ ଧାରଣା ସଂପର୍କରେ ସେ ଦୀର୍ଘ କାଳ ଧରି ମତବ୍ୟକ୍ତ କରି ଆସୁଛନ୍ତି । ଆଧୁନିକ କବିତାର ଗତି, ତାର ଭାବଧାରା, ତାର ସମାଜଚେତନା, କବିତାରେ 'ବ୍ୟକ୍ତି-ବିଶ୍ୱ' ଓ 'ବିଶ୍ୱ-ବ୍ୟକ୍ତି' ଇତ୍ୟାଦି ସଂପର୍କରେ ସେ ନାନା ସୁଚିନ୍ତିତ ମତାମତ ବ୍ୟକ୍ତ କରିଛନ୍ତି । ଆଧୁନିକ 'ଶବ୍ଦର ଅର୍ଥ ଓ ସଂଜ୍ଞା ନିରୂପଣ କ୍ଷେତ୍ରରେ ସେ ଓଡ଼ିଆ, ବଂଗଳା ଓ ବିଶ୍ୱସାହିତ୍ୟରୁ ନାନା ଉଦାହରଣ ପ୍ରଦାନ କରିଛନ୍ତି ଓ 'ଅତ୍ୟାଧୁନିକ' ଶବ୍ଦକୁ ଗୁରୁତର ଭାବେ ସମାଲୋଚନା କରି ତାହାର ପ୍ରଚଳନର ବିରୋଧ କରିଛନ୍ତି । ଦୁଃଖର ବିଷୟ ଏହାଙ୍କର ଆଲୋଚନା ଅନେକ ସ୍ଥଳରେ ପ୍ରାଞ୍ଜଳ ହୋଇ ନଥିବାରୁ ଆଧୁନିକ ଓଡ଼ିଆ କବିତାର ଅବବୋଧ କ୍ଷେତ୍ରରେ ଏହା ପାଠକକୁ ବିଶେଷ ସାହାଯ୍ୟ କରିପାରିନାହିଁ ।

ସମକାଳର କବିତାର ମୂଲ୍ୟାୟନ କ୍ଷେତ୍ରରେ ଶ୍ରୀ ସୌରୀନ୍ଦ୍ର ବାରିକ ଅନ୍ୟତମ । 'ଶବ୍ଦସବୁ ସରିଗଲେ', 'ଚେତନାର ଚୌହଦୀ' ଇତ୍ୟାଦି ଗ୍ରନ୍ଥମାନ ଶ୍ରୀ ବାରିକଙ୍କର କାବ୍ୟାଲୋଚନା ଶକ୍ତିର ଏକଏକ ବଳିଷ୍ଠ ନିଦର୍ଶନ । ବୃତ୍ତିରେ ଇଂରାଜୀ ସାହିତ୍ୟର ଅଧ୍ୟାପକ ଓ ପ୍ରବୃତ୍ତିରେ କବି ଶ୍ରୀ ବାରିକ ଓଡ଼ିଆ କବିତାର ସମାଲୋଚନା କାଳରେ ତାଂକର ସୂକ୍ଷ୍ମବିଶ୍ଳେଷଣ ପ୍ରବୃତ୍ତି ଓ ମୂଲ୍ୟାୟନ ଶକ୍ତିର ପରିଚୟ ପ୍ରଦାନ କରିଛନ୍ତି ଏବଂ ଓଡ଼ିଆ କବିତାର ନାନାବିଧ ସମସ୍ୟା, ତାହାର ପାଶ୍ଚାତ୍ୟମୁଖୀନତା, ତାହାର ଅବବୋଧ କ୍ଷେତ୍ରରେ ସମସ୍ୟାଦି ସଂପର୍କରେ ସେ ଯଥାସମ୍ଭବ ଆଲୋକପାତ କରିଛନ୍ତି ।

ନୂତନ କବିତାର ଅବମୂଲ୍ୟାୟନକୁ ଲକ୍ଷ୍ୟକରି ସଚ୍ଚିଦାନଂଦ ତାହାର ଯଥାର୍ଥ ମୂଲ୍ୟାୟନ ନିମନ୍ତେ ଆଗଭର ହେବାପରେ କବିତା ସମାଲୋଚନାର ମୁକ୍ତାଙ୍ଗନକୁ ଯେଉଁ ଓଡ଼ିଆ କବି ଓହ୍ଲାଇ ଆସିଛନ୍ତି, ସେମାନଙ୍କ ମଧ୍ୟରୁ କବି ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ଅନ୍ୟତମ । କବି ରମାକାନ୍ତ ରଥ ତାଂକର କାବ୍ୟସଂକଳନ ଗୁଡ଼ିକର ପୃଷ୍ଠବଂଧରେ ତାଂକର ନିଜର ବକ୍ତବ୍ୟ ଉପସ୍ଥାପନ ଅବସରରେ କବିତାର ବିବିଧ କକ୍ଷ ଉନ୍ମୋଚନ କରିଛନ୍ତି । ତାଙ୍କ ମତରେ 'ମୌଳିକ ଚେତନାମାନଙ୍କର ବ୍ୟକ୍ତିଗତ ଅଭିବ୍ୟକ୍ତି ଦ୍ୱାରା ଜଣେ ସାହିତ୍ୟିକ ଅନ୍ୟଜଣଙ୍କଠାରୁ ବାରିହୁଏ ।

ସୁତରାଂ ଅଭିଜ୍ଞତା ସାଧାରଣ ଓ ଗୋଷ୍ଠୀଗତ ହେଲେ ମଧ୍ୟ ତାହାର ବ୍ୟକ୍ତିଗତ ଅଭିବ୍ୟକ୍ତି ଦ୍ୱାରାହିଁ ସାହିତ୍ୟର ଗୁଣ ନିର୍ଦ୍ଦିଷ୍ଟ ହୁଏ'। (ଅନେକ କୋଠରୀ, ପୃ ୧୦୩) । ଆଧୁନିକ ସାହିତ୍ୟର ଦୁରବସ୍ଥା ନିମନ୍ତେ ସେ ସାହିତ୍ୟିକର ଅସାମାଜିକତା ଓ ଦୁର୍ବଳ ଲୋକସଂପର୍କକୁ ଅଧିକ ପରିମାଣରେ ଦାୟୀ କରିଛନ୍ତି । ଆମର ଶିକ୍ଷାପଦ୍ଧତିରେ ସାହିତ୍ୟ-ପାଠସୂଚୀର ଦୁର୍ବଳତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ସେ କହିଛନ୍ତି , 'ଆଧୁନିକ ସାହିତ୍ୟର ଅଧ୍ୟୟନ ବା ଅଧ୍ୟାପନାର ଅଭାବ ଦ୍ୱାରା ଛାତ୍ରର (ଆଜିର ଶିଶୁ, କାଲିର ଜନକ) ଅଚେତନରେ ସୁ-କବିତାର ସଂଜ୍ଞା ନିରୂପିତ ହୁଏ ଏବଂ ଯାହା' ପାଠ୍ୟ, ତାହା ପ୍ରାୟ ମଧ୍ୟଯୁଗୀୟ ହୋଇ ଥିବାରୁ ଛାତ୍ର ଯୁଗୋପଯୋଗୀ ଚିନ୍ତାରୁ ଅଲଗା ରହେ । ଅଳ୍ପରେ କହିଲେ, ଆମ ଜୀବନର ଉର୍ବରତମ କାଳରେ ଶିଖାଯାଉଥିବା କବିତା ବହୁତ ପୁରୁଣା ପାଣିର ପୋଖରୀ ପରି, ଯେଉଁଥିରେ ସଜପତ୍ରଟେ ପଡ଼ିବା ମାତ୍ରେ ସଢ଼ିଯିବ ।

ସେ ମତ ଦିଅନ୍ତି ଯେ 'କୌଣସି କଳା-ସୃଷ୍ଟିର ଆଦର ଯେ ସୀମିତ ହେବ ଏକଥା ମୂଳରୁ ବୁଝିନେବା ବାଞ୍ଛନୀୟ' । ଜଣେ ଲେଖିବା ବନ୍ଦକରି ପାରୁନଥିବାରୁ ଲେଖେ, ଜନସମର୍ଥନ ଲାଭ ପାଇଁ ନୁହେଁ । ପୁନଶ୍ଚ ସାହିତ୍ୟର ଭାଷା ବ୍ୟଞ୍ଜନାତ୍ମକ ହେବ, ବର୍ଣ୍ଣନାତ୍ମକ ନୁହେଁ , ଏ ଅର୍ଥରେ 'ସାହିତ୍ୟର ସାଫଲ୍ୟ ଇଙ୍ଗିତ ଦେବାର ସାଫଲ୍ୟ ଦ୍ୱାରା ନିରୂପିତ' ହୋଇଥାଏ ।

କବି ରମାକାନ୍ତ ମନ୍ତ୍ରଦ୍ରଷ୍ଟା ଋଷି ତୁଲ୍ୟ, ତେଣୁ ତାଙ୍କର କବିତାର ପୃଷ୍ଠବଂଧଗୁଡ଼ିକ ତାଂକ କବିତାସମୂହ ତୁଲ୍ୟ ମନ୍ତ୍ରବତ ଗଭୀର ଅର୍ଥବହ ଓ ତାଂକର ଆଲୋଚନା ବ୍ୟଞ୍ଜନାଶ୍ରୟୀ ।

ଓଡ଼ିଆ କବିତା-ଜଗତରେ ଚାରଣକବି ରୂପେ ବିଦିତ କବି ସୀତାକାନ୍ତ ମହାପାତ୍ର ଗଦ୍ୟସାହିତ୍ୟ ଓ ସମାଲୋଚନା କ୍ଷେତ୍ରରେ ସମାନ ଭାବେ ସିଦ୍ଧିଲାଭ କରିଛନ୍ତି । ତାଂକ ମତରେ ସାହିତ୍ୟରେ ଏକ ବୈପ୍ଳବିକ ଶୈଳୀ ସୃଷ୍ଟି ହୋଇ ପାରିବ ପୁରାତନ ମିଥ୍, ପୁରାଣ, ଲୋକ ଜୀବନ, ଓ ଲୋକରୀତି ସହିତ ଆଧୁନିକ ଟେକ୍‌ନିକ୍ ଓ ଆଙ୍ଗିକର ଏକ ସଂହତି ଓ ମିଶ୍ରଣ ସାହାଯ୍ୟରେ । ଗଦ୍ୟଛନ୍ଦ ଓ ମୁକ୍ତଛନ୍ଦର ଅନ୍ତର୍ନିହିତ ପଦ୍ୟାଶ୍ରୟିତା ବା rhythm ପ୍ରତି ସଚେତନ ରହିବାକୁ ପଡ଼ିବ, ନଚେତ୍ ଏ ଛନ୍ଦର ପ୍ରୟୋଗ ଆମର ସାଂସ୍କୃତିକ ଜୀବନର ପରିପୂରକ ହୋଇ ପାରିବନାହିଁ କବିତା ମନ୍ତ୍ରପରି 'ନିବଡ଼ ଓ ସାନ୍ଦ୍ର' ହେବା ବାଞ୍ଛନୀୟ । ତାଙ୍କ ମତରେ କବିତାର ଦୁଇଟି ମୁଖ୍ୟ ଆୟତନ ଥାଏ, ପ୍ରଥମଟି ଉପରିଭାଗ-ଇସ୍‌ଥେଟିକ ; ଦ୍ୱିତୀୟଟି ତାର ଅନ୍ତର୍ନିହିତ ଭାବଧାରା । ଶ୍ରୀ ମହାପାତ୍ର କବିତା ସଂପର୍କରେ ବହୁଦିଗରୁ ଆଲୋଚନା କରିଥିଲେହେଁ, ଆଲୋଚନାଗୁଡ଼ିକ ଇଂରାଜୀ ସାହିତ୍ୟର ଉଦ୍ଧୃତିରେ ଏତେ ଭାରାକ୍ରାନ୍ତ ଯେ ପାଠକଲାବେଳେ ପାଠକ ଭାରାକ୍ରାନ୍ତ ବୋଧ କରିଥାଏ ।

ଏ ପର୍ଯ୍ୟନ୍ତ, ଓଡ଼ିଆ କବିତା ପ୍ରତି ଶ୍ରଦ୍ଧାବଶତଃ ବା ଦାୟିତ୍ୱବୋଧ ହେତୁ ତାହାର ସମୀକ୍ଷା-ସମାଲୋଚନା କରିଥିବା ସମାଲୋଚକଙ୍କ କଥା କୁହାଗଲା । ବର୍ତ୍ତମାନ 'ଛାତ୍ର ଶୁଶ୍ରୂଷା ଓ ବୃତ୍ତିଗତ ଗବେଷଣାର' (୪) ଅଧ୍ୟାୟକୁ ଦେଖାଯାଉ । ବର୍ତ୍ତମାନ ଓଡ଼ିଆ ଭାଷା ଓ ସାହିତ୍ୟ ବିଦ୍ୟାଳୟରୁ

(୪)- 'ନାନା ନିବନ୍ଧ' - ଦାଶରଥି ଦାସ, ଅଗ୍ରଦୂତ, ୧୯୯୨, ପୃ. - ୨୨

ବିଶ୍ୱବିଦ୍ୟାଳୟ ସ୍ତରଯାଏଁ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ । ତେଣୁ ଶିକ୍ଷକଙ୍କଠାରୁ ଅଧ୍ୟାପକଙ୍କ ଯାଏଁ ଅଧିକାଂଶ ବୃତ୍ତିଗତ ତାଡ଼ନାରେ ଓଡ଼ିଆରେ ଗବେଷଣାରତ । ବର୍ତ୍ତମାନ ଏପରି ମଧ୍ୟ ଦେଖାଗଲାଣି ଯେ ଓଡ଼ିଆ ସାହିତ୍ୟ ସଂପର୍କରେ ଆଦୌ ଧାରଣା ନଥାଇ ମଧ୍ୟ ଅନେକ ଗବେଷକ, ଓଡ଼ିଆ ବିଷୟ ବହିର୍ଭୂତ ବିଷୟରେ ଏମ୍.ଏ.ପାଶ୍. କରି ଓଡ଼ିଆ ସାହିତ୍ୟରେ ଗବେଷଣାରତ । ଅବଶ୍ୟ ସାହିତ୍ୟରେ ଏମ.ଏ.ପାଶ୍. ନକଲେ ଯେ ସାହିତ୍ୟରେ ଗବେଷଣାର ଯୋଗ୍ୟତା ରହିବନାହିଁ ଏହା ନୁହେଁ । ମାତ୍ର ଏ କ୍ଷେତ୍ରରେ ଯୋଗ୍ୟତା ନଥିବା ବ୍ୟକ୍ତିଙ୍କ କଥାହିଁ କୁହାଯାଉଛି । ଏପରି କାର୍ଯ୍ୟଘେନା-ଗବେଷଣାପ୍ରୀତି ର ମାତ୍ରା ବର୍ତ୍ତମାନ ସମଧିକ ଭାବେ ବୃଦ୍ଧିପାଇବା ମୂଳରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ଚାକିରୀସର୍ତ୍ତ ବିଶେଷଭାବେ କାମ କରୁଛି ।

ପ୍ରସଙ୍ଗକ୍ରମେ କୁହାଯାଇପାରେ ଯେ ଅଧିକ ଗବେଷଣା ହେବା ଏକ ସୌଭାଗ୍ୟର ଲକ୍ଷଣ ନିଃସନ୍ଦେହରେ । କାରଣ ଭଲ ହେଉ ବା ମନ୍ଦ ହେଉ, ଯଦି ଗୋଟିଏ ସାହିତ୍ୟରେ ନିରବଚ୍ଛିନ୍ନଭାବେ କାମ ହୋଇଚାଲିଥାଏ, ତେବେ କୌଣସି ନା କୌଣସି ବିନ୍ଦୁରେ ବା ମୋଡ଼ରେ କିଛିନା କିଛି ଭଲ ହେବାର ସୁସମ୍ଭାବନା ଆଶା କରାଯାଇପାରେ । ମାତ୍ର ବର୍ତ୍ତମାନର ଗବେଷକମାନଂକ ଗବେଷଣାକର୍ମ ପ୍ରାୟତଃ ଅପ୍ରକାଶିତ ରହୁ ଥିବାରୁ, ତାହା ପାଠକ-ଲୋଚନକୁ ଆସେ ନାହିଁ; ଫଳରେ କଣ କିପରି ତତ୍ତ୍ୱାନ୍ୱେଷଣ ହେଲା ତାହା ଜାଣିବା ପରବର୍ତ୍ତୀ ଗବେଷକ ଓ ପାଠକଙ୍କ ପକ୍ଷରେ ସବୁବେଳେ ସହଜ ହୁଏନାହିଁ । ଅତ୍ୟନ୍ତ ସଂକୋଚର ସହ କହିବାକୁ ହେବ ଯେ, ବର୍ତ୍ତମାନର ଗବେଷଣାର ଫଳ କେବଳ ମାର୍ଗନିର୍ଦ୍ଦେଶକ (ଗାଇଡ୍), ପରୀକ୍ଷକ ଓ ନିଜେ ଗବେଷକ-ଏପରି ମାତ୍ର ଚାରି ଛ'ଅ ଜଣ ବ୍ୟକ୍ତି ଭୋଗ କରନ୍ତି । ପାଣ୍ଡୁଲିପି ବିଭାଗର ଗହନତାକୁ ଅଧିକାଂଶ ଲାଇବ୍ରେରୀରେ ଭେଦ କରିବା ସହଜସାଧ୍ୟ ହୋଇ ନଥିବାରୁ, ସେ ସବୁ ଗବେଷଣା ସଂଦର୍ଭ ମହାକାଳର ଗର୍ଭରେ ବଂଦୀ ହେଲାପ୍ରାୟ ରହିଯାନ୍ତି ।

ବର୍ତ୍ତମାନ ଯେଉଁ କେତୋଟି ଗବେଷଣା ନିବନ୍ଧ ମୁଦ୍ରିତହୋଇ ପାଠକର ନିକଟସ୍ଥ ହୋଇ ପାରିଛି, ତହିଁରୁ କେତୋଟି ବିଚାର କରାଯାଉ । 'ଚାଳିଶବର୍ଷର ଓଡ଼ିଆ କବିତା (୧୯୨୦-୬୦)'ଶୀର୍ଷକରେ ଶ୍ରୀ ନିତ୍ୟାନନ୍ଦ ଶତପଥୀ ୧୯୭୭ ମସିହାରେ ଏକ ଗବେଷଣା ନିବନ୍ଧ ପ୍ରସ୍ତୁତ କରନ୍ତି । ୧୯୭୯ ମସିହାରେ 'ସବୁଜରୁ ସାଂପ୍ରତିକ' ନାମରେ ଏହା ମୁଦ୍ରିତ ହୁଏ 'ଗ୍ରନ୍ଥମନ୍ଦିର', କଟକଙ୍କ ଦ୍ୱାରା । ଦୀର୍ଘ ଚାଳିଶବର୍ଷର କବିତାର ଏକ ପ୍ରାରମ୍ଭିକ ଆକଳନ ରୂପେ ଏ ପୁସ୍ତକକୁ ନିଆଯାଇପାରେ । ସମୀକ୍ଷା କାଳର ଦୀର୍ଘତା ଓ ବିଷୟର ବିପୁଳତା ହେତୁ ଗବେଷକ ଶ୍ରୀ ଶତପଥୀ ନାନା ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିବା ସମ୍ଭବ । ତାଂକର ଆଲୋଚନା ପରିସରକୁ ବହୁ ଆଲୋଚିତ ପ୍ରତିଭା ଆସିଛନ୍ତି ଓ ପାଠକ ସମ୍ମୁଖରେ ପ୍ରତିଭାତ ହୋଇଛନ୍ତି । ଆଧୁନିକ କବିତାର ପ୍ରମୁଖ ସ୍ରଷ୍ଟା ଓ ମୁଖ୍ୟ ଧାରା ଗୁଡ଼ିକ ଉପରେ ଆଲୋକପାତ ପୂର୍ବକ ଶ୍ରୀ ଶତପଥୀ ଓଡ଼ିଆ କବିତାର ବହୁ ନୂତନ ଉଦ୍‌ଘାଟନ-ପ୍ରୟାସ କରିଛନ୍ତି । କିନ୍ତୁ ଏ ନିବନ୍ଧ ତତ୍ତ୍ୱଠାରୁ ଅଧିକ ତଥ୍ୟଭିତ୍ତିକ ହୋଇପଡ଼ିଛି ଏବଂ

ସେ 'ଯୁଗଧାରା ମଧ୍ୟରେ' କବିମାନଙ୍କର 'ସ୍ୱାତଂତ୍ର୍ୟ ସନ୍ଧାନ' କ୍ଷେତ୍ରରେ ଆଂଶିକ ମାତ୍ର ସଫଳ ହୋଇଛନ୍ତି ।

ଶ୍ରୀ ଶତପଥୀ ତାଂକ ପୁସ୍ତକର ମୁଖବଂଧରେ ଉଲ୍ଲେଖ କରିଛନ୍ତି ଯେ ସ୍ନାତକୋତ୍ତର ଶ୍ରେଣୀରେ ଆଧୁନିକ କବିତାପ୍ରତି 'ଛାତ୍ରମାନଙ୍କର ଆତଙ୍କ' ଦେଖି ଏବଂ ଶ୍ରୀ ମାୟାଧର ମାନସିଂଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ପ୍ରଣୟନରେ 'ଭାରସାମ୍ୟହୀନତା' ଲକ୍ଷ୍ୟକରି ସେ ଗବେଷଣାରତ ହୋଇଛନ୍ତି । ଗବେଷକ ଶ୍ରୀ ନଟବର ସାମନ୍ତରାୟ ସାହିତ୍ୟର ଇତିହାସ ସଂପର୍କରେ ଏକ ଐତିହାସିକ ମନ୍ତବ୍ୟ ପ୍ରଦାନ କରିଥିଲେ, ଯାହା ଗବେଷଣାକର୍ମ ସଂପର୍କରେ ମଧ୍ୟ କୁହାଯାଇପାରେ ଏବଂ ଏ କ୍ଷେତ୍ରରେ ତାହା ଉଦ୍ଧାର କରିବା ଯଥାର୍ଥ ହେବ-'ସ୍ରଷ୍ଟା କିମ୍ବା ସୃଷ୍ଟିର ନାମ-ତାଲିକା ସାହିତ୍ୟର ଇତିହାସ ନୁହେଁ, ସୃଷ୍ଟିର ଲଳିତ ସୌନ୍ଦର୍ଯ୍ୟ ଅବବୋଧ ଦିଗରେ ସୃଷ୍ଟି-ଭିତ୍ତିଭୂମିର ସାର୍ଥକ ପରିଚୟ ପ୍ରଦାନ ପ୍ରତ୍ୟେକ ସାହିତ୍ୟ-ଇତିହାସକାରର ଏକ ପରମ କର୍ତ୍ତବ୍ୟ ।' (୫) ଓଡ଼ିଆ ସାହିତ୍ୟର ଇତିହାସ ରଚନାକାଳରେ ଶ୍ରୀ ମାୟାଧର ମାନସିଂହ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଏବଂ ଶ୍ରୀ ନଟବର ସାମନ୍ତରାୟ ଏ ଧର୍ମକୁ ପାଳନ କରିଥିବା ସ୍ଥଳେ, ଶ୍ରୀ ଶତପଥୀ 'ସୃଷ୍ଟିର ଲଳିତ ସୌନ୍ଦର୍ଯ୍ୟ ଅବବୋଧ ଦିଗରେ' ସଫଳ ପ୍ରୟାସ କରି ପାରିନାହାନ୍ତି ; ଯଦିଚ ସେ ପୁସ୍ତକର ମୁଖଶାଳାରେ ନିଜର ଗବେଷଣାକର୍ମ ଦ୍ୱାରା ମାୟାଧରଙ୍କ ଉଦ୍ୟମର 'ଭାରସାମ୍ୟହୀନତା' ଦୂରକରିବାର ପ୍ରତିଶ୍ରୁତି ଦେଇଛନ୍ତି ।

ଉପର ଉଦ୍ଧୃତ ମୁଖବଂଧରୁ ଏହା ସ୍ପଷ୍ଟଯେ ଶ୍ରୀ ଶତପଥୀଙ୍କ ଗବେଷଣାକର୍ମ ଛାତ୍ର ଆତଙ୍କ ଦୂରକରିବାର ଓ ଇତିହାସ ପ୍ରଣୟନର ଚେଷ୍ଟାମାତ୍ର । ଗବେଷଣାର ଗଭୀରତାର ଅଭାବରୁ ସବୁ ସମ୍ଭାବନା ସତ୍ତ୍ୱେ ଏ ନିବନ୍ଧ କୀୟଦଂଶରେ ଛାତ୍ରୋପଯୋଗୀ ହୋଇଛି, ମାତ୍ର ଆଲୋଚନାକ୍ରମରେ ଶ୍ରୀ ଶତପଥୀ ଅନେକ ସଂଶୟାତ୍ମକ, ସ୍ଥଳବିଶେଷରେ ବିଭ୍ରାନ୍ତିକର ତଥ୍ୟ ପ୍ରଦାନ କରିଛନ୍ତି । ଉଦାହରଣ ସ୍ୱରୂପ ସବୁଜ ଗୋଷ୍ଠୀଙ୍କ ସଂପର୍କରେ ସେ ମତ ଦେଇଛନ୍ତି, 'ସବୁଜ ଭାବେ ଯେଉଁ ଭାବଧାରାଟି ଓଡ଼ିଆ କାବ୍ୟ-କବିତା କ୍ଷେତ୍ରରେ ଅନୁପ୍ରବେଶ କରିଛି, ତାହା ଭାବପ୍ରବଣତା, ଅନୁସରଣ ଓ ପ୍ରତିଫଳନ ବ୍ୟତୀତ ଅନ୍ୟକୌଣସି ମୌଳିକ ସୃଷ୍ଟିର ଅନନ୍ୟ ସ୍ୱାକ୍ଷର ବହନ କରିପାରିନାହିଁ ' । 'ସଙ୍ଗୀତ ପ୍ରତି ଅନୁରାଗ ଠାରୁ ଭାବାବେଗ ପ୍ରତି ଭାବସତୀତ୍ୱ ପର୍ଯ୍ୟନ୍ତ ଏ କବିତାରେ ଲିରିକ୍‌ର ଚମତ୍କାର ଗୁଣ ଓ ଧର୍ମ ଦେଖିବାକୁ ମିଳେ । ପୁଣି ଛନ୍ଦର ରଚନାରେ ନୂତନତା ଓ ବିବିଧତା ଠାରୁ ଓଡ଼ିଆ କବିତାକୁ କାବ୍ୟ-ବିପଣୀରୁ ଆଣି କବିତାର ବିତାନରେ ସମୃଦ୍ଧ ଓ ଆକର୍ଷଣୀୟ କରିବା ପର୍ଯ୍ୟନ୍ତ ଏମାନଙ୍କର ଯଥେଷ୍ଟ ଅଧ୍ୟବସାୟ ରହିଛି । ତେଣୁ ସମାଜର ସ୍ୱବିରୋଧୀ ସଂଘର୍ଷମୟ ଘଟଣାସ୍ରୋତ ଓ ସମସ୍ୟାର ଝଞ୍ଜା ମଧ୍ୟରେ କବିର ଶାନ୍ତ ନିସ୍ତରଙ୍ଗ ପ୍ରାଣରୁ ଗୀତିକବିତାର ଧାରା କ୍ରମଶଃ ଲୋପ ପାଇ ଯାଉଥିଲେ ସୁଦ୍ଧା ପ୍ରାଣର ମୁହୂର୍ତ୍ତକର ବିହ୍ୱଳ ଆବେଗ ସମ୍ବଳିତ କାନ୍ତକୋମଳ ଗୀତିକବିତା ଚିରକାଳ ପାଠକ ପ୍ରାଣରେ ଶିହରଣ ସୃଷ୍ଟିକରିବ'।

୫. ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩ -୧୯୨୦), ଶ୍ରୀ ନଟବର ସାମନ୍ତରାୟ, ପୃ.୬୨୮

ପ୍ରସଙ୍ଗତଃ ଉଲ୍ଲେଖ କରାଯାଇପାରେ, ଶ୍ରୀ ଶତପଥୀ ସବୁଜ ଗୋଷ୍ଠୀଙ୍କର ଆତ୍ମପ୍ରକାଶର ଐତିହାସିକ ଅନିବାର୍ଯ୍ୟତାକୁ 'ଅନୁପ୍ରବେଶ' କହିବା ବେଳେ ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ 'ନୂତନ କବିତାର ଭୂମିକା'ରେ (କବିତା ୧୯୬୨, ପୃ -୩୭୧) ପ୍ରସଙ୍ଗକ୍ରମେ 'ସବୁଜମାନେ ଭାଷାର ସ୍ୱାଧୀନତାକୁ ମୂଳମଂତ୍ର' ରୂପେ ଗ୍ରହଣ କରି ଓଡ଼ିଆ ସାହିତ୍ୟରେ ଆଂଦୋଳନ ଆରଂଭ କରିଥିବା ଓ ଭାଷାକୁ ଯଥେଷ୍ଟ ସରଳ ଓ Liberalise କରିପାରିଥିବାର ଉଲ୍ଲେଖ କରିଛନ୍ତି । ପୁଣି ସାହିତ୍ୟର ଇତିହାସରେ ସବୁଜମାନଙ୍କ ସଂପର୍କରେ ଯାହା କହିଛନ୍ତି, ତାହା ପ୍ରଣିଧାନଯୋଗ୍ୟ- 'ଗତାନୁଗତିକ ଧାରାରେ ପ୍ରବାହିତ ହୋଇ ଆସୁଥିବା ସାହିତ୍ୟର ଗତିକୁ ଭିନ୍ନମାର୍ଗରେ ସେ ସମୟରେ ଯେଉଁମାନେ ପରିଚାଳନା କରିଥିଲେ, ସେମାନଙ୍କ ମଧ୍ୟରେ 'ସବୁଜ' ଗୋଷ୍ଠୀର ଲେଖକମାନେ ହେଉଛନ୍ତି ପ୍ରଧାନ ।' (ପୃ ୬୨୫) ।

ଉପର ଉଦ୍ଧୃତ ପଂକ୍ତିରେ ବିଦ୍ୟମାନ ସଂଶୟ ଅସଂଗତି, ଓ କାବ୍ୟଗଠନଗତ ପ୍ରମାଦ ତୁଲ୍ୟ ପ୍ରମାଦ ଓ ଅସଂଗତି ସମଗ୍ର ଗବେଷଣା ନିବନ୍ଧରେ ପ୍ରଚୁର । ଯେପରି ଶ୍ରୀ ମହତାବଙ୍କ ସଂପର୍କରେ 'ଶ୍ରୀ ମହତାବ ମୁଖ୍ୟତଃ କାବ୍ୟର କବି ହେଲେ ମଧ୍ୟ ତାଙ୍କ ଖଣ୍ଡକବିତା ଗୁଡ଼ିକରେ ଏହି ଐତିହାସିକ ଦୃଷ୍ଟି ସଂପନ୍ନତା ଓ ଅତୀତକୁ ମର୍ଯ୍ୟାଦାଦୀପ୍ତ ଦୃଷ୍ଟିରେ ଦେଖିବାର ଆକାଂକ୍ଷା ବେଶ୍ ବାରିହୁଏ ।' ବାକ୍ୟଗଠନ ଗତ ବିଭ୍ରାନ୍ତିର ନାନା ନମୁନା ଦିଆଯାଇପାରେ-'ଆଧୁନିକ ଓଡ଼ିଆ କବିତାର ଉତ୍ତରଣ ପର୍ବରେ ଯେଉଁ ଯଶସ୍ୱୀ ପ୍ରଭାବଶାଳୀ କାବ୍ୟସ୍ୱରୂପକୁ ଦେଖିବାକୁ ମିଳେ, ଅତି ଅବିସମ୍ବାଦିତ ଭାବେ ଓଡ଼ିଆ ସାହିତ୍ୟରେ ୧୯୩୫-୩୬ ପରେ ଆସିଥିବା ନୂତନ ଧାରାର ସେ ଜଣେ ସଚେତନ ଅନୁବ୍ରତୀ, ଏଥିରେ ଦ୍ୱନ୍ଦର ଅବକାଶ ନାହିଁ' । ସୂଚିତବ୍ୟ ଯେ ଏ ବାକ୍ୟଟି ସଚ୍ଚିଦାନଂଦଙ୍କ ସଂପର୍କିତ ଆଲୋଚନାର ପ୍ରଥମ ପାରାଗ୍ରାଫ୍ (ପୃ୨୫୬) । ଅଥବା 'ଭାନୁମତୀର ଦେଶେ' ଓ 'ଝଡ଼ରେ କୃଷ୍ଣଚୂଡ଼ା' ପରିକଳ୍ପନାରେ କିନ୍ତୁ କାବ୍ୟର ବିଷୟବସ୍ତୁ ଅପେକ୍ଷା ଶୈଳ୍ପିକ ସମୃଦ୍ଧି, ରୂପଚେତନା, ଉପମା, ରୂପକର ନୂତନତାରେ ଏ କାବ୍ୟଟି ଓଡ଼ିଆ କବିତା କ୍ଷେତ୍ରରେ ଏକ ନୂତନ ପ୍ରତିଶ୍ରୁତି ଦାବିକରେ । (ପୃ୨୦୩)

ନିବନ୍ଧରେ ତାତ୍ତ୍ୱିକ ମୂଲ୍ୟାୟନର ଅଭାବ ସହ ବାକ୍ୟଗଠନଗତ ବିଭ୍ରାନ୍ତି, ବିରାମ ଚିହ୍ନ ପ୍ରୟୋଗରେ ଶିଥିଳତା, କାଳ ସଂଖ୍ୟାନ 'ସାଲ' / 'ଖ୍ରୀଷ୍ଟାବ୍ଦ' / 'ମସିହା'ଦି ଶବ୍ଦର ଉଲ୍ଲେଖର ବାରଂବାର ବିସ୍ମରଣ, ବକ୍ତବ୍ୟରେ ସ୍ୱବିରୋଧ ଓ ଅନଚ୍ଛତା ଇତ୍ୟାଦି ଶ୍ରୀ ଶତପଥୀଙ୍କ ଗବେଷଣା କର୍ମର ଦୁଃଖଦାୟକ ଦିଗ । ଓଡ଼ିଆ କବିତାର ସାର୍ବିକ ମୂଲ୍ୟାୟନ କ୍ଷେତ୍ରରେ ଏହି ଶୁଭ ଉଦ୍ୟମ ଏ ନିବନ୍ଧକୁ ସବୁ ସମ୍ଭାବନା ସତ୍ତ୍ୱେ ଶ୍ରୀ ଶତପଥୀଙ୍କ ତୁଲ୍ୟ ପ୍ରବୀଣ ଅଧ୍ୟାପକ ସାଫଲ୍ୟ ଦାନ ନ କରିପାରିବା ଏକ ପରିତାପର ବିଷୟ । ଛାତ୍ରମାନଙ୍କ ସହାୟତା ନିମନ୍ତେ କରାଯାଇଥିବା ଏ ଉଦ୍ୟମ ଛାତ୍ରମାନଂକୁ କେତେଦୂର ନିର୍ଭୁଲପଥ ପ୍ରଦର୍ଶନ କରିପାରିବ, ତାହା ଚିନ୍ତାର ବିଷୟ । ଏ ପରିପ୍ରେକ୍ଷୀରେ ଦୁଇଟି ବକ୍ତବ୍ୟ ଉଲ୍ଲେଖ କରିବାର ଯାଥାର୍ଥ୍ୟ ବୋଧ କରୁଛି । ପ୍ରଥମଟି ଶ୍ରୀ ରମାକାନ୍ତ ରଥ ତାଂକର 'ଅନେକ କୋଠରୀ' କବିତା ସଂକଳନରେ କହିଥିଲେ 'ଆଧୁନିକ ସାହିତ୍ୟର ଅଧ୍ୟୟନ

ବା ଅଧ୍ୟାପନାର ଅଭାବ ଦ୍ୱାରା ଛାତ୍ରର (ଆଜିର ଶିଶୁ, କାଲିର ଜନକ) ଅଚେତନରେ ସୁ-କବିତାର ସଂଜ୍ଞା ନିରୂପିତ ହୁଏ ×××।' ଏ ବକ୍ତବ୍ୟ ବ୍ୟାଖ୍ୟାର ଅପେକ୍ଷା ରଖେନାହିଁ । ଦ୍ୱିତୀୟଟି ଶ୍ରୀ ଚିନ୍ତାମଣି ବେହେରାଙ୍କର-'ସୃଷ୍ଟିର ମୂଳରହସ୍ୟ-ଉଦ୍‌ଘାଟନ କରିବାରେ କୌଣସି ସମାଲୋଚନା କେତେବେଳେ ପୂର୍ଣ୍ଣ ମନୋରଥ ହୁଏ ନାହିଁ । କାରଣ ସବୁ ସୃଷ୍ଟିର ମୂଳକାରଣ ପରି ଏହା ରହସ୍ୟ ଓ ଅଂଧକାର ଦ୍ୱାରା ଅଚ୍ଛାଦିତ ।' (କାବ୍ୟ ଓ କଳାକାର ପୃ ୧)

ଏ ଉଭୟ ଉକ୍ତିର ପରିପ୍ରେକ୍ଷୀରେ ଶ୍ରୀ ଶତପଥୀଙ୍କ କାବ୍ୟାଲୋଚନା ସମାଲୋଚନୀୟ ଏବଂ ସ୍ପୃହଣୀୟ ।

ଓଡ଼ିଆ କବିତା କ୍ଷେତ୍ରରେ ଅନ୍ୟଏକ ଗବେଷଣା ନିବନ୍ଧ ହେଲା ଶ୍ରୀ ମଥୁରାନାଥ ହୋତାଙ୍କର ୧୯୮୪ ମସିହାରେ ପ୍ରସ୍ତୁତ, ୧୯୯୩ ମସିହାରେ ମୁଦ୍ରିତ 'କବି ସଚ୍ଚି ରାଉତରାୟଙ୍କ ପାଣ୍ଡୁଲିପି: ଏକ ନୂତନ ଯୁଗର ପ୍ରସ୍ତୁତି' । ଜଣେ କବିଙ୍କର ଖଣ୍ଡିଏ ମାତ୍ର କାବ୍ୟସଂକଳନକୁ ନେଇ ଗବେଷଣା କରିବାର ଦୁଃସାହସ କରିଛନ୍ତି । ଶ୍ରୀ ହୋତା ଏବଂ କୀୟଦଂଶରେ ସାଫଲ୍ୟ ଅର୍ଜନ କରିଛନ୍ତି ମଧ୍ୟ । ଆଲୋଚନା କ୍ରମେ ସେ ଆଧୁନିକ ଓଡ଼ିଆ କବିତାର ଅଗ୍ରଣୀ, ଯୁଗସ୍ରଷ୍ଟା ସଚ୍ଚିଦାନଂଦଂକର ନାନା ଦିଗ ଉପରେ ଆଲୋକପାତ କରିଛନ୍ତି । 'ପରମ୍ପରା ଓ ବ୍ୟକ୍ତି ପ୍ରତିଭାର' ଆକଳନ ସହ ଯୁଗମାନସର ପ୍ରସ୍ତୁତି, ଐତିହାସିକ ପ୍ରେକ୍ଷାପଟ, ନୂତନ କବିତାର ଆତ୍ମିକ ଓ ଆଙ୍ଗିକର ବିବର୍ତ୍ତନ, ଆହରଣ, ଆତ୍ମୀକରଣ, ନବସୃଜନ, ପ୍ରଭାବ ଓ ପ୍ରତିଷ୍ଠାଦି ବହୁ ବିଷୟରେ ବିଚାର କରି ଗବେଷକ 'ପାଣ୍ଡୁଲିପି'ର ଐତିହାସିକ ଭୂମିକା ନିରୂପଣ କରିଛନ୍ତି । ସ୍ଥଳ ବିଶେଷରେ ତାଂକର ମନ୍ତବ୍ୟ ଯଥାର୍ଥ ଓ ଅର୍ଥବହ ହୋଇପାରି ନଥିଲେହେଁ, 'ପାଣ୍ଡୁଲିପି'ର ଭୂମିକା ନିର୍ଣ୍ଣୟ କ୍ଷେତ୍ରରେ ସେ ପ୍ରଶଂସନୀୟ ଉଦ୍ୟମ କରିଛନ୍ତି । ଶ୍ରୀ ଗିରୀଶ ଚନ୍ଦ୍ର ମିଶ୍ରଙ୍କ ଡି.ଲିଟ୍. ନିବନ୍ଧ 'ଆଧୁନିକ ଓଡ଼ିଆ କବିତା ଓ ମିଥ୍ ପ୍ରସଙ୍ଗ' ୧୯୮୭ ମସିହାରେ କଟକରୁ 'ଫ୍ରେଣ୍ଡସ୍ ପବ୍ଲିଶର୍ସ'ଙ୍କ ଦ୍ୱାରା ପ୍ରକାଶିତ ହୁଏ । କାବ୍ୟର ଆଙ୍ଗିକ ସମ୍ପର୍କରେ ଏ ନିବନ୍ଧ ବହୁତ ତଥ୍ୟ ପ୍ରଦାନ କରିପାରିଛି । ମିଥ୍ ସମ୍ପର୍କୀୟ ଧାରଣାସହ, ନୃତାତ୍ତ୍ୱିକ, କାବ୍ୟତାତ୍ତ୍ୱିକ, କଳାତ୍ମକ ଏବଂ ପ୍ରୟୋଗାତ୍ମକ ଦୃଷ୍ଟିରୁ ଗବେଷକ କବିତାର ବିଶ୍ଳେଷଣ କରିଛନ୍ତି । ଗବେଷିକା ଶ୍ରୀମତୀ ଅରୁଣା ମହାନ୍ତିଙ୍କ ନିବନ୍ଧ 'ସଚ୍ଚି ରାଉତରାୟଙ୍କ କବିତାରେ 'ନାରୀ' ଶୀର୍ଷକରେ ୧୯୯୫ ମସିହାରେ 'ଓଡ଼ିଶା ବୁକ୍‌ଷ୍ଟୋର'ଙ୍କ ଦ୍ୱାରା ପ୍ରକାଶ ପାଇଛି । ବହୁ ବିଭ୍ରାନ୍ତିକର ତଥ୍ୟରେ ନିବନ୍ଧଟି ପ୍ରସ୍ତୁତ । ପୁସ୍ତକର ପ୍ରାରମ୍ଭରେ ସୂଚନା ଦେଇ ଗବେଷିକା କହିଛନ୍ତି- 'ସଚ୍ଚି ରାଉତରାୟଙ୍କ କାଳ ଏକ ଭୂଇଁଫୋଡ଼ ସଂସ୍କୃତିର କାଳ, ଇଂରେଜ ଶାସନ-ସଭ୍ୟତା-ପରାଂମୁଖ ଉତ୍କଳୀୟ ଜନଜୀବନ ଅନେକତଃ ସଂସ୍କାରବିରୋଧୀ ହୋଇଉଠିଥିବାର କାଳ । ପଡ଼ୋଶୀ ବଙ୍ଗପ୍ରଦେଶରେ ଇଂରାଜୀ ଶିକ୍ଷା-ସଭ୍ୟତାର ଭୂୟସୀ ବିକାଶ ଘଟୁଥିବା ବେଳେ ଉତ୍କଳୀୟ ଜନଜୀବନ ଏହାର ତିବ୍ର ବିରୋଧ କରିବାରେ ବ୍ୟସ୍ତ ।' (ପୃ: କ) ଏ ଉଦ୍ଧୃତିରୁ ଗବେଷିକାଙ୍କ ଆଲୋଚନାଦକ୍ଷତା ସଦ୍ୱଃ ଅନୁମେୟ । ଅନେକ ସ୍ଥଳରେ ଗବେଷିକା 'ସବୁଜରୁ ସାଂପ୍ରତିକ' ପୁସ୍ତକ ଉପରେ ଅକାରଣ ନିର୍ଭରଶୀଳ ; ଯଦିଚ ଗବେଷଣାର ଅର୍ଥ ନୂତନ ମାର୍ଗ ପ୍ରଦର୍ଶନ, ଉଦାସୀନ

ପାଠକଙ୍କୁ କବିତା ଦିଗରେ ଆକର୍ଷଣ । ଏ ନିବନ୍ଧରେ ମଧ୍ୟ ବାକ୍ୟଗଠନଗତ ତଥା ତଥ୍ୟଗତ ବିଭ୍ରାନ୍ତି, ବିରାମଚିହ୍ନ ବ୍ୟବହାରର ଶିଥିଳତା, ତତ୍ତ୍ୱାନ୍ୱେଷଣରେ ଶୈଥିଲ୍ୟ ଇତ୍ୟାଦି ବହୁଳଭାବେ ଲକ୍ଷିତ ହୋଇଛି । ଉଦ୍ଧୃତି ପ୍ରଦାନରେ ଶୈଥିଲ୍ୟ ହେତୁ ନିଜ ବକ୍ତବ୍ୟ ଓ ଉଦ୍ଧୃତ ବକ୍ତବ୍ୟର ବ୍ୟବଧାନ ରକ୍ଷିତ ହୋଇନାହିଁ ନିବନ୍ଧରେ । ଉଦାହରଣ ସ୍ୱରୂପ ପୃ ୨୭୮ରେ ଶ୍ରୀ ଭାନୁଜୀ ରାଓଙ୍କ ସମ୍ପର୍କିତ ଗବେଷିକାଙ୍କ ଆଲୋଚନା ଓ 'ସବୁଜରୁ ସାମ୍ପ୍ରତିକ' ର ପୃ: ୫୦୭ରେ ଭାନୁଜୀ ରାଓଙ୍କ ସମ୍ପର୍କିତ ଆଲୋଚନାକୁ ବିଚାର କରାଯାଇପାରେ ।

ଓଡ଼ିଆ କବିତାରେ ଅନ୍ୟାନ୍ୟ ବହୁ ଗବେଷକ ବର୍ତ୍ତମାନ ନିବନ୍ଧମାନ ପ୍ରସ୍ତୁତ କରୁଛନ୍ତି ଓ ଅନେକ ନିବନ୍ଧ ପ୍ରକାଶ ମଧ୍ୟ ପାଇଛି । ଏଠାରେ କିନ୍ତୁ ସବୁ ଆଲୋଚକଙ୍କୁ ଆଲୋଚନାର ପରିସରଭୁକ୍ତ କରାଯିବା ସମ୍ଭବ ହୋଇନାହିଁ ; କେବଳ ନିର୍ବାଚିତ କେତେଜଣଂକୁ ଏ ଆଲୋଚନାର ପରିସରଭୁକ୍ତ କରାଯାଇଛି । ଏ ଆଲୋଚନା ଆଧୁନିକ ଓଡ଼ିଆ କବିତାର ସମାଲୋଚନା ସମ୍ପର୍କିତ ଶେଷ ବା ଶ୍ରେଷ୍ଠ ଆଲୋଚନା ନୁହେଁ । ବ୍ୟକ୍ତିବିଶେଷଙ୍କ ବ୍ୟତୀତ ମୂଲ୍ୟାୟନ ଝଙ୍କାର, ଇସ୍ତାହାର ଆଦି ପତ୍ରିକାସମୂହ ମଧ୍ୟ କବିତାର ନାନାବିଧ ଆଲୋଚନା କ୍ଷେତ୍ରରେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରିଛନ୍ତି, ଯାହା ବିଷୟରେ ଏଠାରେ ସ୍ୱତନ୍ତ୍ର ଆଲୋଚନା କରାଯାଇପାରି ନାହିଁ । ଆଲୋଚନାର ପରିସମାପ୍ତି କାଳରେ ସମାଲୋଚକ ଶ୍ରୀ କୁଞ୍ଜବିହାରୀ ଦାଶଙ୍କ ଉକ୍ତିକୁ ଉଦ୍ଧାର କରି ଆଶା କରିବି ଭବିଷ୍ୟତ ସମାଲୋଚକଗଣ ପୂର୍ବସୂରୀଙ୍କ ଏ ଉକ୍ତିକୁ ସ୍ମରଣରେ ରଖି କବିତାର ଗବେଷଣା-କ୍ଷେତ୍ରରେ, ବସ୍ତୁତଃ ସାହିତ୍ୟ ଗବେଷଣା କର୍ମରେ ଲିପ୍ତହେବେ-'ସାହିତ୍ୟ-ଗବେଷକଙ୍କର କାର୍ଯ୍ୟ ବୈଜ୍ଞାନିକ ଗବେଷକଙ୍କ ଠାରୁ ଭିନ୍ନତର । ଏଥିରେ ସ୍ଥୂଳ ଉପାଦାନର ପରୀକ୍ଷା ନିରୀକ୍ଷା ହୁଏନାହିଁ ସେ ସୃଷ୍ଟିକୁ ପୁଣି ସୃଷ୍ଟି କରେ, କଳାତ୍ମକ ବିଚାରବୁଦ୍ଧିର ପ୍ରୟୋଗରେ ମାନସିକ ସୃଷ୍ଟିର ନୂତନ ମୂଲ୍ୟାଙ୍କନ କରେ ; ଯୁଗେଯୁଗେ ସୃଷ୍ଟି ରହସ୍ୟର ଦ୍ୱାର ଉଦ୍‌ଘାଟନ କରେ । ' କୀର୍ତ୍ତିରକ୍ଷର ସଂବନ୍ଧା, ସ୍ଥିରା ଭବତି ଭୂତଳେ' ବୋଲି ଯାହାକୁ କହନ୍ତି, ତାହା ସବୁ କବି ବା ଲେଖକଙ୍କପ୍ରତି ପ୍ରଯୁଜ୍ୟ ହୋଇନପାରେ । କାଳକ୍ରମେ ବହୁ କବିଙ୍କର ନାମ ବୁଡିଯାଇପାରେ ; ଗବେଷକ ସେହି ବିସ୍ମୃତ କବି ଲେଖକଙ୍କ ଜୀବନୀ ଓ ରଚନାକୁ ପୁଣି ଲୋକ ଲୋଚନକୁ ଆଣେ, ସେମାନଙ୍କର ଲେଖାର ନୂତନ ବିଭବ ଦର୍ଶାଏ । ଉଦାସୀନ ପାଠକ ଆକୃଷ୍ଟ ହୁଅନ୍ତି, ରଚନାର ଏକାନ୍ତ ପ୍ରାଚୀନ, ଅଧୁନା ସ୍ୱେଚ୍ଛାକୃତ ନୂତନ ରସ ଆସ୍ୱାଦନ କରନ୍ତି । ତେଣୁ ଗବେଷକ ଜଣେ ଗତାନୁଗତିକ ବ୍ୟାଖ୍ୟାକାର ନୁହନ୍ତି, ଏକଦା ସୃଷ୍ଟିର ପୁନଃ ସର୍ଜକ ; ନୂତନର ପ୍ରସ୍ତାବକ ପ୍ରେରକ ।'

ପ୍ରାଧ୍ୟାପିକା, ଓଡ଼ିଆବିଭାଗ
ଶାନ୍ତିନିକେତନ



# ଓଡ଼ିଆ ସାହିତ୍ୟରେ ତୁଳନାତ୍ମକ ଗବେଷଣା

## ମନୋରଂଜନ ପ୍ରଧାନ

ସାହିତ୍ୟ ସୃଷ୍ଟି ସମୟରୁ ତୁଳନାତ୍ମକ ଦୃଷ୍ଟିର ଆୟମାରମ୍ଭ । କାରଣ ତୁଳନା ବିନା ସାହିତ୍ୟର ଅଧ୍ୟୟନ ଏକ ପ୍ରକାର ଅସମ୍ଭବ । ଓଡ଼ିଆ ସାହିତ୍ୟର ପ୍ରାରମ୍ଭିକ କାଳରେ ତୁଳନା କେବଳ ଲେଖକ ଓ ପାଠକଙ୍କ ମଧ୍ୟରେ ସୀମିତ ଥିଲା । ପରେ ଏହା ସାହିତ୍ୟର ଚର୍ଚ୍ଚକ, ସମାଲୋଚକ ତଥା ଗବେଷକମାନଙ୍କ ଦୃଷ୍ଟିକୁ ଆସିଛି । ଫଳରେ ଓଡ଼ିଆ ସାହିତ୍ୟ ଅନ୍ୟାନ୍ୟ ସାହିତ୍ୟ ସହିତ ତୁଳନୀୟ ବୋଲି ପ୍ରତିପାଦିତ ହେଇଛି । ପ୍ରଥମ ଅବସ୍ଥାରେ ଓଡ଼ିଆ ସାହିତ୍ୟର ସାରଳା ମହାଭାରତ, ଦାଣ୍ଡି ରାମାୟଣ ଓ ଭାଗବତକୁ ସଂସ୍କୃତ ସହିତ ତୁଳନା କରାଯାଇ ସଂସ୍କୃତ ରଚନା ସବୁକୁ ଉଚ୍ଚମାନ୍ୟତା ପ୍ରଦାନ କରା ଯାଇଛି । ମାତ୍ର, ପରବର୍ତ୍ତୀ ସମୟରେ ଉପଯୁକ୍ତ ସମାଲେଚନା ଯୋଗୁଁ ତୁଳନାତ୍ମକ ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ପାଇଲା । ଫଳରେ ବିବିଧତା ମଧ୍ୟରେ ଏକତାକୁ ଗୁରୁତ୍ୱ ଦେଇ ସାହିତ୍ୟର ଉତ୍କର୍ଷ ଓ ଅପକର୍ଷକୁ ଦର୍ଶାଇ ଦିଆଗଲା । ଓଡ଼ିଆ ସାହିତ୍ୟରେ ଇନ୍ଦ୍ରଧନୁ, ବିଜୁଳି ଆଦି ପତ୍ରିକା ମାଧ୍ୟମରେ ଯଥାର୍ଥ ସମାଲୋଚନା ପ୍ରାୟ ଶହେ ବର୍ଷଠାରୁ ଆରମ୍ଭ ହେଲା । ପରେ ପରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ 'ଶ୍ରୀଭାରତ ଦର୍ପଣ' ପରି ଗୁଣାତ୍ମକ, ତୁଳନାତ୍ମକ ସମାଲୋଚନା ବହୁ ମହାଭାରତ ଗବେଷକଙ୍କୁ ପ୍ରେରଣା ଯୋଗାଇଛି । 'ଶ୍ରୀ ଭାରତ-ଦର୍ପଣ' ର 'ବିଷୟ ଓ ବୈଷମ୍ୟ', 'ଭାଷା-ସାହିତ୍ୟ', 'କବିପରିଚୟ' ଉପସଂହାର ବା ସଂକୀର୍ଣ୍ଣ ଭାବର ଆଲୋଚନା ଅନନ୍ୟ ସାଧାରଣ । ଏହା ସଂଭବତଃ ଓଡ଼ିଆ ସାହିତ୍ୟରେ ପ୍ରଥମ ସଂସ୍କୃତ ଓ ଓଡ଼ିଆ ମହାଭାରତର ତୁଳନାତ୍ମକ ଗବେଷଣାତ୍ମକ ଗ୍ରନ୍ଥ । ପ୍ରକୃତରେ ମହାକବି ସାରଳା ଦାସଙ୍କ ମହାଭାରତ ଆମର ନମସ୍ୟ । ବଂଗଳାର କାଶୀରାମ ଦାସ ଏହା ପ୍ରଭାବରେ ମହାଭାରତ ରଚନା କରିଥିବା ପ୍ରମାଣସିଦ୍ଧ । ଏହା ମଧ୍ୟ ସତ ଯେ, ସାରଳା ମହାଭାରତ ସମଗ୍ର ଭାରତରେ ପ୍ରଥମ ରଚିତ ସ୍ୱୟଂସଂପୂର୍ଣ୍ଣ ଗ୍ରନ୍ଥ । ଏଣୁ ହୁଏତ ଏଇଥିପାଇଁ, ଓଡ଼ିଆ ସାହିତ୍ୟର ଇତିହାସକାର ସୁରେନ୍ଦ୍ର ମହାନ୍ତି ସାରଳା ଦାସଙ୍କୁ ଗ୍ରୀକ୍ ସାହିତ୍ୟର ହୋମର ଓ ଇଂରାଜୀ ସାହିତ୍ୟର ଚସରଂକ ସହିତ ତୁଳନା କରିଛନ୍ତି । କେବଳ ତୁଳନା କରିନାହାନ୍ତି, ଏହା ମାଧ୍ୟମରେ ସେ ଗବେଷଣାର ଯେଉଁ ମାର୍ଗ ଦର୍ଶାଇଛନ୍ତି ତାହା ଏବେ ମଧ୍ୟ ଅପୂରଣୀୟ ରହିଛି । ମାତ୍ର ପରିମାଣାତ୍ମକ ଓ ଗୁଣାତ୍ମକ ଦୃଷ୍ଟିରୁ ଓଡ଼ିଆ ଗବେଷଣାରେ ସାରଳା ମହାଭାରତର ତୁଳନାତ୍ମକ ଆଲୋଚନା ମଧ୍ୟ କମ୍ ନୁହେଁ । ଏ କ୍ଷେତ୍ରରେ ଡ଼ଃ ଉଦୟନାଥ ସାହୁଙ୍କର ନିବନ୍ଧ 'ସାରଳା ମହାଭାରତର ଶାସ୍ତ୍ରୀୟ ଆଧାର : ଏକ ଅଧ୍ୟୟନ' ଓ କାହ୍ନୁ ଚରଣ ପାଢ଼ୀଙ୍କ 'ସାରଳା ମହାଭାରତର କାବ୍ୟଦୃଷ୍ଟି' (ଦୁଇଟି ଯାକ ଅପ୍ରକାଶିତ ଗବେଷଣା-ନିବଂଧ) ଆମ ଦୃଷ୍ଟିକୁ ପ୍ରସାରିତ କରେ । ଏତ୍‌ତ ବ୍ୟତୀତ 'ସାରଳା ସାହିତ୍ୟ ସଂସଦ' କଟକ ଦ୍ୱାରା ସଂକଳିତ ବହୁ ଉପାଦେୟ ଗ୍ରନ୍ଥରେ ସାରଳାଦାସ ଓ ବ୍ୟାସଦେବଙ୍କ ମହାଭାରତର ତୁଳନାତ୍ମକ ପ୍ରବଂଧସବୁ ପ୍ରକାଶିତ । ବିଶେଷତଃ ସଂସ୍କୃତ ମହାଭାରତ ଓ ଓଡ଼ିଆ ମହାଭାରତର

ପର୍ବ ଓ ଚରିତ୍ରଗୁଡ଼ିକର ତୁଳନା 'ମହାଭାରତର ପଟ୍ଟଭୂମି' ଓ 'ମହାଭାରତ ର ଚରିତ୍ରାନୁଶୀଳନ' ଗ୍ରନ୍ଥ ଦ୍ୱୟରେ ଉତ୍କୃଷ୍ଟଭାବେ ବର୍ଣ୍ଣିତ । ଓଡ଼ିଶାର ବହୁ ଗବେଷକ ଭାରତୀୟ ଅନ୍ୟାନ୍ୟ ମହାଭାରତ ସହିତ ଓଡ଼ିଆ ମହାଭାରତର ତୁଳନାତ୍ମକ ଗବେଷଣାରେ ଏବେ ମଧ୍ୟ ବ୍ରତୀ । ସୁତରାଂ ଭବିଷ୍ୟତରେ ଅନ୍ୟାନ୍ୟ ପ୍ରାଦେଶିକ ମହାଭାରତ ଓ ଓଡ଼ିଆ ମହାଭାରତର ତୁଳନାତ୍ମକ ଗବେଷଣାରେ ବହୁ ନୂତନ ତଥ୍ୟର ସଂଧାନ ମିଳିପାରେ ।

ମହାଭାରତର ଗବେଷଣାରେ ଓଡ଼ିଶା ଗବେଷକମାନେ ଯେପରି ବ୍ୟାପକ ଦୃଷ୍ଟି ନିକ୍ଷେପ କରିଛନ୍ତି ଓ କରୁଛନ୍ତି ସେହିପରି ବଳରାମ ଦାସଙ୍କ ଦାଣ୍ଡିରାମାୟଣ ସହ ଅନ୍ୟାନ୍ୟ ଭାରତୀୟ ରାମାୟଣର ତୁଳନାତ୍ମକ ଅଧ୍ୟୟନରେ ନିବିଷ୍ଟ ଅଛନ୍ତି । ଡ଼ଃ ନରେନ୍ଦ୍ରନାଥ ମିଶ୍ର ଦାଣ୍ଡିରାମାୟଣକୁ ବାଲ୍ମୀକି ରାମାୟଣ ଓ ଅନ୍ୟାନ୍ୟ ଆଞ୍ଚଳିକ ରାମାୟଣ ସହ ତୁଳନା କରିବାର ସର୍ବପ୍ରଥମ ମାର୍ଗ-ଦର୍ଶକ । ଡ଼ଃ. ମିଶ୍ରଙ୍କ 'ବଳରାମ ଦାସ ଓ ଓଡ଼ିଆ ରାମାୟଣ' ଗ୍ରନ୍ଥକୁ ଅଧ୍ୟୟନ କରି ପଣ୍ଡିତ ନୀଳକଣ୍ଠ ଦାସ କହିଥିଲେ 'ବାଲ୍ମୀକି ରାମାୟଣ ଓ ବଳରାମ ଦାସଙ୍କ ରାମାୟଣର ଧର୍ମ ଓ ସମାଜ ଚିତ୍ର ସହିତ ଅନ୍ୟସବୁ ଚିତ୍ରର ତୁଳନା କରି ବସିଲେ ବାଲ୍ମୀକିଙ୍କ ରାମାୟଣ କଣ, ବଳରାମ ଦାସଙ୍କ ରାମାୟଣ କଣ, ତାହା ସହଜରେ ବାରିହେବ ।' ରାମ ସାହିତ୍ୟର ତୁଳନାତ୍ମକ ଗବେଷଣା କ୍ରମରେ 'ଜଗମୋହନ ରାମାୟଣ ଓ ରଂଗନାଥ ରାମାୟଣର କଥାଶିଳ୍ପ : ଏକ ତୁଳନାତ୍ମକ ଅଧ୍ୟୟନ' (ବନଜାବାସିନୀ ମହାପାତ୍ର) 'ଅଦ୍ଭୁତ ରାମାୟଣ ଓ ବିଲଙ୍କା ରାମାୟଣ ଏକ ତୁଳନାତ୍ମକ ଅଧ୍ୟୟନ' (ପଦ୍ମାବତୀ ତ୍ରିପାଠୀ) ଆଦି ଉଲ୍ଲେଖଯୋଗ୍ୟ ପ୍ରୟାସ । ଓଡ଼ିଶାର ପଞ୍ଚସଖା ଯୁଗ ବା ପୁରାଣଯୁଗର ସାହିତ୍ୟ ଗୁଡ଼ିକରେ ଏହିପରି ବହୁ ତୁଳନାତ୍ମକ ଗବେଷଣା କରାଯାଇଥିଲେ ହେଁ ପଞ୍ଚସଖା ସାହିତ୍ୟର ଆପେକ୍ଷିକ ସ୍ଥାନ ନିରୂପଣ କରିବାରେ ଏ ସବୁ ପୂର୍ଣ୍ଣଭାବରେ ସହାୟକ ହୋଇପାରିନାହିଁ । ତଥାପି ଅଚ୍ୟୁତାନନ୍ଦ, ଜଗନ୍ନାଥ ଦାସ ଓ ବଳରାମ ଦାସଙ୍କ ସାହିତ୍ୟ ଗୁଡ଼ିକର ତୁଳନାତ୍ମକ ଆଲୋଚନାରେ (ଯଥାକ୍ରମେ ; 'ସଂସ୍କୃତ ହରିବଂଶ ଓ ଓଡ଼ିଆ ହରିବଂଶର ତୁଳନାତ୍ମକ ବିଚାର' (ମିନତି ରାଉତରାୟ) 'ଓଡ଼ିଶାର ଭକ୍ତକବି ଶ୍ରୀ ଜଗନ୍ନାଥ ଓ ଆସାମର ଭକ୍ତକବି ଶ୍ରୀ ଶଙ୍କରଦେବ : ଏକ ତୁଳନାତ୍ମକ ଅଧ୍ୟୟନ' (ନିତ୍ୟାନନ୍ଦ ଦାସ) 'ବଳରାମ ଦାସଙ୍କ ଲକ୍ଷ୍ମୀପୁରାଣ ଓ ଉତ୍କଳୀୟ ଲକ୍ଷ୍ମୀ ଉପାସନା : ଏକ ଅନୁଶୀଳନ' (ରେବତୀ ଦେବୀ) ଓଡ଼ିଆ ପଞ୍ଚସଖା ସାହିତ୍ୟର ବହୁ ଦିଗନ୍ତ ଉଦ୍‌ଘାଟିତ । ଏହି ସମୟକୁ ସୀମାବଦ୍ଧ କରି ଅନେକ ଗବେଷକ ସଂସ୍କୃତସାହିତ୍ୟ, ହିନ୍ଦୀସାହିତ୍ୟ ସହିତ ମଧ୍ୟ ଓଡ଼ିଆ ସାହିତ୍ୟର ତୁଳନା କରିବାରେ ଅଭିନିବିଷ୍ଟ । ପଞ୍ଚସଖା ସାହିତ୍ୟ ପରି ଓଡ଼ିଆରେ ମଧ୍ୟଯୁଗୀୟ ସାହିତ୍ୟର ଗବେଷଣା ପରିମାଣ ଓ ଗୁଣରେ କମ୍ ହୋଇନାହିଁ । ମଧ୍ୟଯୁଗୀୟ କାବ୍ୟ ଅଲୋଚନା କ୍ଷେତ୍ରରେ ସଂସ୍କୃତ କବି କାଳିଦାସ, ଶ୍ରୀହର୍ଷ, ଜୟଦେବ ପ୍ରମୁଖଙ୍କ ସହ ଦୀନକୃଷ୍ଣ, ଉପେନ୍ଦ୍ରଭଂଜ, ଅଭିମନ୍ୟୁ ତଥା ବଳଦେବ ରଥଙ୍କର ତୁଳନାତ୍ମକ ମୂଲ୍ୟାୟନ ବହୁଳାଂଶରେ କରାଯାଇଥିଲେ ହେଁ ଓଡ଼ିଆ ସାହିତ୍ୟରେ ସଂସ୍କୃତ ସାହିତ୍ୟର ସୁଦୂରପ୍ରସାରୀ ପ୍ରଭାବକୁ ପୂର୍ଣ୍ଣଭାବରେ ପ୍ରତିଷ୍ଠା କରାଯାଇପାରିନାହିଁ । ତଥାପି ଡ଼ଃ ବିଷ୍ଣୁଚରଣ ପଣ୍ଡାଙ୍କ 'ସାରଳା ଦାସ ଓ

ଉପେନ୍ଦ୍ରଭଂଜଙ୍କର ବଂଗଳା ସାହିତ୍ୟକୁ ଅବଦାନ', ଡ଼ଃ ଅନିରୁଦ୍ଧ ବିଶ୍ୱାଳଙ୍କର 'ମଧ୍ୟଯୁଗୀୟ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ଜୟଦେବଙ୍କ ପ୍ରଭାବ', ଡ଼ଃ ଗଂଗାଧର ନନ୍ଦଙ୍କର 'ଭଂଜ ସାହିତ୍ୟରେ ସଂସ୍କୃତର ପ୍ରଭାବ', ଡ଼ଃ କାର୍ତ୍ତିକଚନ୍ଦ୍ର ଦାସଙ୍କର 'ଓଡ଼ିଆ ଓ ବଂଗଳା ସାହିତ୍ୟରେ ମଂଗଳକାବ୍ୟ' ପ୍ରଭୃତି ତୁଳନାତ୍ମକ ଗବେଷଣା ତତ୍ତ୍ୱ ଓ ତଥ୍ୟ ଦୃଷ୍ଟିରୁ ଉନ୍ନତ ମାନର । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଓ ନୈଷଧୀୟ ଚରିତମ୍ : ଏକ ତୁଳନାତ୍ମକ ଅଧ୍ୟୟନ' (ଭାସ୍କର ଚନ୍ଦ୍ର ଦାସ), 'ବୈଦେହୀଶ ବିଳାସ ଓ ରାମ ଚରିତ ମାନସର ଏକ ତୁଳନାତ୍ମକ ଅଧ୍ୟୟନ' (କଲ୍ୟାଣୀ ଦାସ) ପ୍ରଭୃତି ବିଶ୍ୱବିଦ୍ୟାଳୟରୁ ଉପାଧି ଲଭି ପ୍ରକାଶିତ ହେଲେ ସଂସ୍କୃତ ଓ ହିନ୍ଦୀ ସାହିତ୍ୟର ଅଲୋଚନାକୁ ଅଧିକ ଆଗେଇ ନେବାରେ ସୁବିଧା ହେବ । ଅବଶ୍ୟ ମଧ୍ୟଯୁଗୀୟ ସାହିତ୍ୟ ଚର୍ଚ୍ଚା ପାଇଁ 'ଓଡ଼ିଆ କାବ୍ୟ କୌଶଳ'ରେ ଡ଼ଃ ସୁଦର୍ଶନ ଆଚାର୍ଯ୍ୟ ଏକ ଉଲ୍ଲେଖଯୋଗ୍ୟ ଗବେଷଣା କରିଛନ୍ତି । ଏଥିରେ ସେ ଭାରତୀୟ କାବ୍ୟତତ୍ତ୍ୱ ନିୟମରେ ପରିଚାଳିତ ଓଡ଼ିଆ କାବ୍ୟଶୈଳୀକୁ ଉପଯୁକ୍ତ ସ୍ଥାନ ଦେବା ସହିତ ଏହାର ପ୍ରାଚୀନତା ଓ ସଫଳତା ସଂପର୍କରେ ଯୁକ୍ତି ବାଢ଼ିଛନ୍ତି । ପ୍ରକୃତରେ ମଧ୍ୟଯୁଗୀୟ କାବ୍ୟ ପାଠକ ପାଇଁ ଏ ପ୍ରକାର ତୁଳନାତ୍ମକ ଗବେଷଣାର ଆବଶ୍ୟକତା ଅପରିହାର୍ଯ୍ୟ ।

ଇଂରେଜମାନଙ୍କ ସଂସର୍ଗରେ ଆସି ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗ ସମୃଦ୍ଧ ହୋଇଛି । ସାହିତ୍ୟସ୍ରଷ୍ଟା ନୂତନ ଆଲୋକରେ ଉଦ୍‌ଭାସିତ ହେଇ ଯେଉଁ ସତ୍ୟସଂଧାନ କରିଛି ତାହା ଯୁଗ ଯୁଗ ପାଇଁ ଆଲୋକବର୍ତ୍ତିକା ହେଇ ରହିଛି । ଏ ସମୟରେ ସାହିତ୍ୟର ତୁଳନାତ୍ମକ ଗବେଷଣା ମୁଖ୍ୟତଃ ସାହିତ୍ୟିକ ଅନ୍ୟ ଜଣେ ସାହିତ୍ୟିକଙ୍କ ସହିତ, ଗ୍ରନ୍ଥ ସହିତ ଅନ୍ୟ ଏକ ଗ୍ରନ୍ଥର, ପୁଣି ସାହିତ୍ୟିକ ଯୁଗ ସହିତ ଅନ୍ୟ ଏକ ଯୁଗର ଆଲୋଚନାରେ ପର୍ଯ୍ୟବସିତ । ସାହିତ୍ୟର ବିଭିନ୍ନ ଭାବ ଓ ରୂପରେ ଯେଉଁ ପରିବର୍ତ୍ତନ ଦେଖାଦେଲା, ତାହା ମଧ୍ୟ ଆଲୋଚନା କରିବା ପାଇଁ ଗବେଷକମାନଙ୍କୁ ପ୍ରେରଣା ଦେଇଛି । ଯଦିଚ ଓଡ଼ିଆ ସାହିତ୍ୟ ପାଇଁ ଏ ସମୟ ଏକ ସଂକଟମୟ ପରିସ୍ଥିତି ସୃଷ୍ଟି କରିଥିଲା, ତଥାପି ବୃହତ୍ତର ଜଗତ ସହିତ ଆମର ସଂପର୍କକୁ ଦୃଢ଼ୀଭୂତ କରିବା ପାଇଁ ଇଂରାଜୀ ଓ ବଂଗଳା ଭାଷାର ଆବଶ୍ୟକତା ଅନେକଭାବରେ ଉପଲବ୍ଧ । ବିଶେଷକରି ରାଧାନାଥ, ମଧୁସୂଦନ, ରାମଶଂକର, ନନ୍ଦକିଶୋରଙ୍କ ଭଳି ସାହିତ୍ୟିକଙ୍କର ପ୍ରାଚ୍ୟ ପାଶ୍ଚାତ୍ୟ ଆଭିମୁଖ୍ୟ ସେମାନଙ୍କ ସାହିତ୍ୟର ତୁଳନାରୁ ସ୍ପଷ୍ଟ ହେଇଛି । ଏ ସମୟର ଅନ୍ୟତମ ପ୍ରମୁଖ ସାହିତ୍ୟିକ ଗଂଗାଧରଙ୍କ ସାହିତ୍ୟିକ ବ୍ୟକ୍ତିତ୍ୱ ମଧ୍ୟ ଉତ୍କଳୀୟତା ଓ ମହାଭାରତୀୟତା ଗୁଣରେ ମହିମାନ୍ୱିତ । ଇଂରାଜୀ ଓ ବଂଗଳା ସାହିତ୍ୟକୁ ସମ୍ମୁଖରେ ରଖିବା ସହିତ ଗ୍ରୀକ୍ ସାହିତ୍ୟ ଅଭିମୁଖୀ ସାହିତ୍ୟିକଙ୍କ ପ୍ରତି ତୁଳନାତ୍ମକ ଦୃଷ୍ଟି ଦେଖାଇଛନ୍ତି ସମାଲୋଚକଗଣ । ରାଧାନାଥଙ୍କ ପ୍ରତିଭାର ଆକଳନ କରିବାକୁ ଯାଇ ବହୁ ଗବେଷକ ତାଙ୍କ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବକୁ ନିଖୁଣ ଭାବରେ ଆଲୋଚନା କରିଛନ୍ତି । ଏ କ୍ଷେତ୍ରରେ ଡ଼ଃ ନଟବର ସାମନ୍ତରାୟ ଓ ଡ଼ଃ କ୍ଷେତ୍ରବାସୀ ନାୟକଙ୍କ ଭୂମିକା ଗୁରୁତ୍ୱ ପୂର୍ଣ୍ଣ । ଡ଼ଃ ସାମନ୍ତରାୟ ଆଧୁନିକ 'ଓଡ଼ିଆ ସାହିତ୍ୟର ଇତିହାସ' (୧୮୦୩-୧୯୨୦ )ରେ 'ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ' ପରିଚ୍ଛେଦରେ ସ୍ପଷ୍ଟ ଭାବରେ କହିଛନ୍ତି ଯେ 'ଆଧୁନିକ ବଂଗ

ସାହିତ୍ୟ ମାଧ୍ୟମରେ ଓଡ଼ିଆ ଲେଖକ ପ୍ରଥମେ ପାଶ୍ଚାତ୍ୟ ସାହିତ୍ୟର ରସ-ସୌନ୍ଦର୍ଯ୍ୟ ଉପଭୋଗ କରିଛି, ପୁନଶ୍ଚ ନୂତନ ସାହିତ୍ୟର ଏକ ପ୍ରତିଷ୍ଠିତ ନୂତନ ରୂପ-ବୈଚିତ୍ର୍ୟ ସେ ଆଧୁନିକ ବଂଗସାହିତ୍ୟ ଭିତରେ ମଧ୍ୟ ଦେଖି ପାରିଛି । ଏହାରି ଅନୁସରଣରେ ଓଡ଼ିଶାର ବାୟୁମଣ୍ଡଳ ଓ ଭାରତୀୟ ଚିନ୍ତା, ଜୀବନାଦର୍ଶର ଭିତ୍ତି ଉପରେ ପାଶ୍ଚାତ୍ୟ ସାହିତ୍ୟର ସୃଷ୍ଟି-ଆଦର୍ଶ ସେ ଆଧୁନିକ ଓଡ଼ିଆ ସାହିତ୍ୟରେ ରୂପାୟନ କରିବାରେ ସମର୍ଥ ହୋଇଛି । ବଂଗଳା, ଇଂରାଜୀ, ସଂସ୍କୃତ ଓ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ପରଂପରା - ଏ ଚାରି ସାହିତ୍ୟର ସମନ୍ୱୟ ଉପରେ ଆଧୁନିକ ଓଡ଼ିଆ ସାହିତ୍ୟର ଆଦି ଭିତ୍ତିଭୂମି ପ୍ରତିଷ୍ଠିତ । ଏକ ନୂତନ ସାହିତ୍ୟ ବିକାଶର ଇତିହାସରେ ଯାହା ଏକାନ୍ତ ସତ୍ୟ ଓ ପ୍ରକୃତିକ, ରାଧାନାଥ କେବଳ ତାହାରି ଆଶ୍ରୟରେ ଆଧୁନିକ ଓଡ଼ିଆ ସାହିତ୍ୟ-ସୌଧର ମୂଳପତ୍ତନ ଦେବାର ପ୍ରୟାସ କରିଥିଲେ । ତାଙ୍କ କର୍ମମୟ ଜୀବନର ପ୍ରଥମ ପର୍ଯ୍ୟାୟରେ ସାହିତ୍ୟ ବିକାଶର ଯେଉଁ ସତ୍ୟ ସେ ଗଭୀରଭାବେ ଅନୁଧ୍ୟାନ କରିଥିଲେ ତାକୁ ହିଁ ସେ ପରବର୍ତ୍ତୀ ସମୟରେ ସୃଷ୍ଟି-ସଂପଦ ରୂପେ ଫୁଟାଇ ଥିଲେ ।' (୧୯୮୩, ପୃଷ୍ଠା-୨୬୫) ଏ ସବୁ ସତ୍ତ୍ୱେ କୁହାଯାଇପାରେ ଯେ, ରାଧାନାଥଙ୍କ ପ୍ରତିଭାର ସାର୍ବିକ ଆକଳନ ଏବେ ମଧ୍ୟ ସଂଭବ ହେଇଛି ବୋଲି କୁହାଯାଇ ନପାରେ । କାରଣ ରାଧାନାଥଙ୍କର ଯେଉଁମାନଙ୍କ ସାହିତ୍ୟରେ (ଯଥା ; କାଳିଦାସ, ଭବଭୂତି, ହୋମର, ସେକସ୍‌ପିଅର, ବ୍ୟାସଦେବ, ଉପେନ୍ଦ୍ରଭଂଜ, ମାଇକେଲ ମଧୁସୂଦନ, ବାଇରନ, ଗେଟେ) ପ୍ରବେଶ ଥିଲା ସେ ସବୁ ଏବେ ମଧ୍ୟ ଅନାଲୋଚିତ । ବହୁ ସାହିତ୍ୟରେ କବିଙ୍କର ଗଭୀର ପାଣ୍ଡିତ୍ୟ ଥିଲା ସତ, କିନ୍ତୁ ସେ ସବୁର ପ୍ରଭାବ ମଧ୍ୟ ଆମେ ଦେଖିବାକୁ ପାଉ । ମାତ୍ର ଓଡ଼ିଆ ତୁଳନାବାଦୀ ସମାଲୋଚକ କେବଳ ରାଧାନାଥଙ୍କ ପୁରାତନକୁ ନୂତନ କରି ଗଢ଼ିବାର ଏବଂ ଆହୃତିରେ ମୌଳିକତା ପ୍ରତିଫଳିତ କରିବାର ବାହାଦୂରୀକୁ ଦର୍ଶାଇଥାଏ । ତଥାପି ଡ଼ଃ କ୍ଷେତ୍ରବାସୀ ନାୟକଙ୍କ 'ଆଧୁନିକ ଓଡ଼ିଆ କାବ୍ୟସାହିତ୍ୟରେ ପାଶ୍ଚତ୍ୟ ପ୍ରଭାବ' ଓ ଡ଼ଃ ସୁରେନ୍ଦ୍ରନାଥ ଆଚାର୍ଯ୍ୟଙ୍କ 'ରାଧାନାଥଙ୍କ ଉପରେ ବୈଦେଶିକ ପ୍ରଭାବ' ପ୍ରଭୃତି ଏକ ଏକ ନିର୍ଭରଯୋଗ୍ୟ ତଥା ପ୍ରତିଶ୍ରୁତିପୂର୍ଣ୍ଣ ତୁଳନାତ୍ମକ ଗବେଷଣା ନିବଂଧ । ରାଧାନାଥଯୁଗର ଅନ୍ୟ ସାହିତ୍ୟରଥୀ ଯଥାକ୍ରମେ ଫକୀରମୋହନ ଓ ମଧୁସୂଦନଙ୍କ ତୁଳନାତ୍ମକ ଗବେଷଣା ତତ୍ତ୍ୱଦୃଷ୍ଟିରୁ ଏକ ଏକ ସାର୍ଥକ ବିଚାର । ଫକୀରମୋହନଂକ 'ପେଟେଣ୍ଟ ମେଡ଼ିସିନ୍' ଗଳ୍ପର ଆଲୋଚନା କରି ଡ଼ଃ ନଟବର ସାମନ୍ତରାୟ ଏଥିରେ ଜାପାନୀ 'ଜାଜେନ' ଗୀତିନାଟ୍ୟ ଓ ଏହାର ବଂଗଳା ଅନୁବାଦ ଗୀତିନାଟ୍ୟ 'ନିଦିଧ୍ୟାସନ'ର ପ୍ରତ୍ୟକ୍ଷ ପ୍ରଭାବକୁ ସ୍ପଷ୍ଟ କରିଛନ୍ତି । ଏଥି ସହିତ 'ଫକୀରମୋହନ ଓ ବଂକିମଚଂଦ୍ର' (ନୀଳିମା ଦେ) ଡ଼ଃ ଲକ୍ଷ୍ମୀଧର ଦାସଙ୍କ 'ବଂକିମଚନ୍ଦ୍ର ଓ ଫକୀରମୋହନ', 'ବିଶିଷ୍ଟ ଯୁଗତ୍ରୟୀଙ୍କ ଔପନ୍ୟାସିକ ପ୍ରତିଭା ଏକ ତୁଳନାତ୍ମକ ଅଧ୍ୟୟନ : ବଂକିମଚନ୍ଦ୍ର ଚଟ୍ଟୋପାଧାୟ, ଫକୀରମୋହନ ସେନାପତି, ପ୍ରେମଚନ୍ଦ' (ବସନ୍ତ କୁମାର ରାଉତରାୟ) ପ୍ରଭୃତି ତୁଳନାତ୍ମକ ଗବେଷଣା ନିବଂଧ ଆହୁରି ପ୍ରମାଣସିଦ୍ଧ ଓ ଯୁକ୍ତିସଂଗତ ହେବା ଦରକାର ଥିଲେହେଁ ଫକୀରମୋହନଙ୍କ ଉପନ୍ୟାସଗୁଡ଼ିକର ବସ୍ତୀର୍ଣ୍ଣ ଭାବସତ୍ତାର ପରିଚୟ ଏଥିରୁ ମିଳିଥାଏ । ଡ଼ଃ ନୃସିଂହ ଷଡ଼ଙ୍ଗୀ ତାଙ୍କ ପିଏଚ୍.ଡ଼ି. ଗବେଷଣା

ନିବଂଧ 'ବିଶ୍ୱସାହିତ୍ୟରେ ଫକୀରମୋହନ' ରେ ଫକୀରମୋହନଙ୍କୁ ଇଂରାଜୀ ଔପନ୍ୟାସିକ ଚାର୍ଲସ ଡିକେନ୍ସ୍ ଓ ମାର୍କିନ ଔପନ୍ୟାସିକ ନାଥନିଏଲ ହଥର୍ଣ୍ଣଙ୍କ ସହ ତୁଳନାକରି ଫକୀରମୋହନଙ୍କୁ ବିଶ୍ୱସାହିତ୍ୟରେ ଆକଳିତ କରିବା ସହିତ ଯଥାଯୋଗ୍ୟ ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ଡ଼ଃ ଷଡ଼ଙ୍ଗୀଙ୍କ ମତରେ 'ଆଲୋଚ୍ୟ ଗ୍ରନ୍ଥଟିରେ ବିଶ୍ୱସାହିତ୍ୟ ପରିପ୍ରେକ୍ଷୀରେ ଫକୀରମୋହନଙ୍କୁ ଆଲୋଚନା କରିବା ପାଇଁ ପରିସର ସୃଷ୍ଟି କରାଯାଇନାହିଁ ; ବରଂ ବିଶ୍ୱସାହିତ୍ୟରେ ଫକୀରମୋହନଙ୍କୁ ପ୍ରତିଷ୍ଠା ଦେବା ପାଇଁ ଗଭୀର ଭାବେ ପ୍ରୟାସ କରାଯାଇଛି । ଏହି ପ୍ରୟାସକୁ ଚରିତାର୍ଥ କରିବା ପାଇଁ ମୁଁ ବିଶ୍ୱସାହିତ୍ୟରେ ପ୍ରତିଷ୍ଠିତ ମାର୍କିନ ଔପନ୍ୟାସିକ ହଥର୍ଣ୍ଣଙ୍କୁ ଏକ ମାଧ୍ୟମ ଭାବେ ଗ୍ରହଣ କରିଛି ଓ ସେହି ମାଧ୍ୟମକୁ ସମ୍ବଳ କରି ଫକୀରମୋହନଙ୍କୁ ତଉଲିଛି । ତେଣୁ 'ବିଶ୍ୱ ସାହିତ୍ୟରେ ଫକୀରମୋହନ' ବସ୍ତୁତଃ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣଙ୍କ ସହ ଫକୀରମୋହନଙ୍କର ଏକ ତୁଳନାତ୍ମକ ବିଭବଟିଏ ମାତ୍ର' (୧୯୯୧, ବିଶ୍ୱସାହିତ୍ୟରେ ଫକୀରମୋହନ : କାହିଁକି ? କିପରି ?? ) ରାଧାନାଥ ଯୁଗର ଅନ୍ୟତମ ପ୍ରତିଭାଧର ସାହିତ୍ୟିକ ମଧୁସୂଦନ ରାଓଙ୍କ ଚର୍ଚ୍ଚା ପାଇଁ ସଂସ୍କୃତ ଓ ବଂଗଳା ସାହିତ୍ୟର ଅଧ୍ୟୟନ କରାଯାଇଛି । ତାଙ୍କ ଉପରେ ଉପନିଷଦ ଓ ରବୀନ୍ଦ୍ର ସାହିତ୍ୟର ପ୍ରଭାବ ଦର୍ଶାଇ ଡ଼ଃ ଶରତଚନ୍ଦ୍ର ପ୍ରଧାନ 'ମଧୁ ସୃଷ୍ଟି, ଅମୂର୍ତ୍ତ ଦୃଷ୍ଟି' ଗ୍ରନ୍ଥରଚନା କରିଛନ୍ତି । ଡ଼ଃ କୁଶନନ୍ଦଙ୍କ 'ବିଶ୍ୱକବି ରବୀନ୍ଦ୍ର ଓ କବି ମଧୁସୂଦନ ରାଓଙ୍କ କାବ୍ୟ କବିତାର ଏକ ଅଧ୍ୟୟନ' ଏକ ତଥ୍ୟପ୍ରଧାନ ଗେବେଷଣା-ଗ୍ରନ୍ଥ । ଏଥିରେ ଗ୍ରନ୍ଥକାର ଉଭୟଙ୍କ ରଚନାର ସମକାଳତା, ସମଧର୍ମିତା ଓ ସମଦର୍ଶିତାକୁ ପ୍ରତିପାଦନ କରିବା ସହିତ ମଧୁସୂଦନଙ୍କୁ ରବୀନ୍ଦ୍ରନାଥଙ୍କ ଠାରୁ କବି ଭାବରେ କୌଣସି ଗୁଣରେ ନ୍ୟୂନ କରି ନାହାନ୍ତି । ରାଧାନାଥ ଯୁଗର ଅନ୍ୟ ଯେଉଁ ସାହିତ୍ୟିକମାନଙ୍କ ତୁଳନାତ୍ମକ ଅଧ୍ୟୟନ କରାଯାଇଛି ସେମାନେ ହେଲେ ରାମଶଂକର, ନନ୍ଦକିଶୋର ଓ ଗଂଗାଧର ମେହେର । ରାମଶଂକରଙ୍କ ନାଟକପରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟକର ପ୍ରଭାବ ସଂପର୍କରେ ତୁଳନାତ୍ମକ ଗବେଷଣାକରି ତନ୍ମୟ କବି ପ୍ରାଚ୍ୟ ନାଟ୍ୟତତ୍ତ୍ୱ ଓ ପାଶ୍ଚତ୍ୟ ନାଟକର ବିଶଦ ବ୍ୟାଖ୍ୟା କରିଛନ୍ତି । ଆହୁରି ମଧ୍ୟ ସେ ଦର୍ଶାଇଛନ୍ତି ଯେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟକର ପ୍ରଭାବରେ ସମୁତ୍‌କୀର୍ଣ୍ଣ ରାମଶଂକରଂକ ନାଟକଗୁଡ଼ିକ ଯଥାର୍ଥରେ ଏକ ଏକ ସାର୍ଥକ ସୃଷ୍ଟି । ରାଧାନାଥ ଯୁଗର ଏକ ଅମଳିନ ପ୍ରତିଭା ନନ୍ଦକିଶୋର ବଳଙ୍କ ସୃଷ୍ଟିସଂପଦର ପର୍ଯ୍ୟାଲୋଚନା ତୁଳନାତ୍ମକ ଦୃଷ୍ଟିରୁ ବିଶେଷ ହୋଇନାହିଁ । ତଥାପି ପଲ୍ଲୀକବି ନନ୍ଦକିଶୋର ଓ ସୁମିତ୍ରାନନ୍ଦନଙ୍କ କବିତାର ତୁଳନାତ୍ମକ ଅଧ୍ୟୟନ କରି ଡ଼ଃ ଭଗବାନ ବେହେରା ଦୁଇ କବିଙ୍କ କବିତାର ଯଥାର୍ଥ ମୂଲ୍ୟାୟନ କରିଛନ୍ତି । ମୂଳତଃ ଉଭୟ କବିଙ୍କ ସୌନ୍ଦର୍ଯ୍ୟଦୃଷ୍ଟି ଓ ପଲ୍ଲୀପ୍ରାଣତା ହିଁ ଏହାଙ୍କର ତୁଳନୀୟ ବିଭାବ । ନନ୍ଦକିଶୋରଂକ ଭଳି ରାଧାନାଥ ଯୁଗର ଅନ୍ୟତମ ଶ୍ରେଷ୍ଠ ବିନ୍ଧାଣୀ ଗଂଗାଧର ମେହେରଙ୍କ ସଂପର୍କରେ ମଧ୍ୟ ଆଶାନୁରୂପ ତୁଳନାତ୍ମକ ଗବେଷଣା ହେଇନାହିଁ । ସାମାନ୍ୟ କେତେଜଣ ଗବେଷକ ଭାରତୀୟ ସାହିତ୍ୟରେ ଗଂଗାଧରଙ୍କ ସ୍ଥାନ ନିରୂପଣ କରିବାକୁ ଯାଇ ଯେଉଁ ସମାଲୋଚନା ଲେଖିଛନ୍ତି ତହିଁରେ ଶାଣିତତା ନାହିଁ, ବରଂ ଶୁଷ୍କ ନିରସ ଆଲୋଚନାରେ ଏ ଗୁଡ଼ିକ ଭାରାକ୍ରାନ୍ତ । ତେବେ ଗୌରୀ

କୁମାରବ୍ରହ୍ମ ଗଂଗାଧରଙ୍କ ସଂପର୍କରେ ଯେଉଁ କେତୋଟି ତୁଳନାତ୍ମକ ପ୍ରବଂଧ ଲେଖିଛନ୍ତି, ସେଗୁଡ଼ିକ ଉଚ୍ଚକୋଟୀର ନିଶ୍ଚୟ । ଗଂଗାଧରଙ୍କ ଆହରଣ ଓ ସ୍ୱୀକରଣ କ୍ଷମତା ଥିଲା ଅସୀମ । ଭାରତୀୟ ପ୍ରାଚୀନ ସଂସ୍କୃତି ଓ ପୁରାଣ ତାଙ୍କୁ ସାହିତ୍ୟିକ ପ୍ରତିଭା ଆଣି ଦେଇଥିଲା ବୋଲି କବି ନିଜେ କହି ଛନ୍ତି । ସୁତରାଂ ଏ ପ୍ରକାର ପ୍ରଭାବର କାରଣ ଅନ୍ୱେଷଣ ଅଧିକ ମାତ୍ରାରେ ଦରକାର ।

ରାଧାନାଥ ଯୁଗପରେ ଓଡ଼ିଆ ସାହିତ୍ୟରେ ଯଥାର୍ଥ ଭାବରେ ଆଧୁନିକ ଯୁଗର ଅଭ୍ୟୁଦୟ ଘଟିଛି । ସାହିତ୍ୟର ପ୍ରାୟ ପ୍ରତ୍ୟେକ ବିଭାଗରେ ଗବେଷଣା ଆରମ୍ଭ ହେବା ସହିତ ଏ ସବୁର ନିଷ୍କର୍ଷ ସବୁ ପ୍ରକାଶ ପାଇଥିଲା । ଏହାପରେ ସତ୍ୟବାଦୀର ପଞ୍ଚସଖାଗଣ ନୂତନ ଯୁଗ ଓ ଯୁଗର ଆନ୍ଦୋଳନରେ ନିଜକୁ ପ୍ରସ୍ତୁତ କରି ଓଡ଼ିଶାର ଜାତୀୟତାରେ ଉଦ୍‌ବୁଦ୍ଧ ହେଲେ । ଅନାବିଳ ଓ ଉଗ୍ର ଜାତୀୟତା ଯୋଗୁଁ ଏମାନେ ଓଡ଼ିଶାର ସଂସ୍କୃତି, ଐତିହ୍ୟ ଓ ସାହିତ୍ୟକୁ ପୃଥିବୀର ବହୁ ପ୍ରାଚୀନ ସଂସ୍କୃତି, ଐତିହ୍ୟ ଓ ସାହିତ୍ୟ ଠାରୁ ପ୍ରାଚୀନତମ ବୋଲି ଆଲୋଚନା କଲେ । ସତ୍ୟବାଦୀର ସ୍ରଷ୍ଟା ଓ ସୃଷ୍ଟିକୁ ନେଇ ପରବର୍ତ୍ତୀ ସମୟରେ ଯେଉଁ ବିଦଗ୍ଧଗଣ ଚର୍ଚ୍ଚାକଲେ ସେମାନେ ମଧ୍ୟ ଓଡ଼ିଆ ଜାତୀୟତାରେ ମୋହାବିଷ୍ଟ ଥିବା ପରି ମନେହୁଏ । ଡ଼ଃ ଶକୁନ୍ତଳା ବଳିଆର ସିଂହ ଓଡ଼ିଆ ସାହିତ୍ୟରେ ଜାତୀୟବାଦୀ ଚେତନା ଶୀର୍ଷକ ନିବଂଧରେ ସତ୍ୟବାଦୀ ସାଧକଙ୍କ ପ୍ରାଚ୍ୟ-ପାଶ୍ଚାତ୍ୟ ଅଭିମୁଖୀ ଅନେକ ଚିନ୍ତାଚେତନାର ପ୍ରଭାବକୁ ସ୍ୱୀକାର କରିଥିଲେ ମଧ୍ୟ ଓଡ଼ିଆ ଜାତୀୟତାକୁ ଗୁରୁତ୍ୱ ଦେଇ ଛନ୍ତି । ସତ୍ୟବାଦୀ ସମସାମୟିକ କୁନ୍ତଳାକୁମାରୀଙ୍କ ରଚନା ସଂଭାରକୁ ନେଇ ଓଡ଼ିଆ ସାହିତ୍ୟରେ ତୁଳନାତ୍ମକ ଗବେଷଣା କରିଛନ୍ତି ଡ଼ଃ ସାବିତ୍ରୀ ଦେବୀ ତାଙ୍କ 'ବିଂଶ ଶତାବ୍ଦୀର ଦୁଇ ଅମ୍ଳାନ ପ୍ରତିଭା: କୁନ୍ତଳାକୁମାରୀ ଓ ସୁଭଦ୍ରା କୁମାରୀ' ଗ୍ରନ୍ଥରେ । ଉଭୟଙ୍କ କବିତା ଓ ଗଦ୍ୟର ଏକ ଦୀର୍ଘ ଆଲୋଚନା ଏହା ପୂର୍ବରୁ ହୋଇନଥିଲା ସତ, ମାତ୍ର ନିବଂଧଟିରେ ଆଲୋଚନାର ଗାମ୍ଭୀର୍ଯ୍ୟ ନ ଥିବାରୁ ଏହା ସେତିକି ତୀକ୍ଷ୍ଣ ହୋଇପାରି ନାହିଁ । ତଥାପି ଗବେଷିକାଙ୍କ ମତରେ 'କୁନ୍ତଳାଙ୍କ ସମସାମିୟିକ ସୁଭଦ୍ରା କୁମାରୀ ଚୌହାନଙ୍କ ରଚନାରେ ଯୁଗର ସମକାଳୀନ ପ୍ରଭାବ ଏବଂ ସାମ୍ୟ ଲକ୍ଷ୍ୟ କରି ଦୁହିଁଙ୍କର ତୁଳନାତ୍ମକ ଆଲୋଚନା ପାଇଁ ମନ ବଳିଲା' । ଏହା ଡ଼ଃ ସାବିତ୍ରୀ ଦେବୀଙ୍କର ତୁଳନାତ୍ମକ ଗବେଷଣା ପ୍ରତି ଥିବା ଗଭୀର ମମତ୍ୱବୋଧର ପରିଚାୟକ ନିଶ୍ଚୟ । ପ୍ରକୃତ ପକ୍ଷେ ରାଧାନାଥଙ୍କ ଆହରଣରେ ପାଶ୍ଚାତ୍ୟ ପ୍ରଭାବ ଓଡ଼ିଶା ମାଟିକୁ ଆସିଥିଲେହେଁ ସବୁଜଗୋଷ୍ଠୀଙ୍କ କବିତାରେ ଏହା ସକ୍ରିୟ ହୋଇ ଉଠିଛି । ସବୁଜଗୋଷ୍ଠୀ ଉଚ୍ଚଶିକ୍ଷିତ ଥିବାରୁ ରବୀନ୍ଦ୍ରନାଥ ଓ ପ୍ରମଥ ନାଥ ଚୌଧୁରୀଙ୍କ କବିତା ସବୁକୁ ପଢ଼ିବା ସହିତ ପାଶ୍ଚାତ୍ୟର ବହୁ କବିଙ୍କୁ ପଢ଼ିଥିଲେ । ସବୁଜ ଗୋଷ୍ଠୀ ବଂଗଳା କଲ୍ଲୋଳ ଗୋଷ୍ଠୀଙ୍କ ସଂପର୍କରେ ଆସି ଓଡ଼ିଆ ସାହିତ୍ୟରେ ଏକ ସବୁଜୀୟ ପରିମଣ୍ଡଳ ସୃଷ୍ଟିକଲେ । ଏମାନଙ୍କ ସାହିତ୍ୟରେ ପ୍ରଭାବ ସ୍ପଷ୍ଟଥିବାରୁ ସମାଲୋଚକଗଣ ମଧ୍ୟ ଗବେଷଣା ମାଧ୍ୟମରେ ଏହାର ସୂତ୍ର ସବୁକୁ ସଂଧାନ କରିଛନ୍ତି ।

ସବୁଜ ଯୁଗ ପରେ ଯେଉଁ ପ୍ରଗତିଯୁଗର ଆବିର୍ଭାବ ଘଟିଲା ତାହା ବହୁଧା ବିଭକ୍ତ ଏକ ଆନ୍ଦୋଳନ ମାତ୍ର । ରାଜନୈତିକ ଦୃଷ୍ଟିକୋଣ, ତଥା ଏକ ନିର୍ଦ୍ଦିଷ୍ଟ ଦର୍ଶନର ପ୍ରଚାର ପ୍ରାରମ୍ଭିକ

ସମୟରେ କାୟାବିସ୍ତାର କରିଥିଲା । ମାତ୍ର ଅନାଗ୍ରହୀ ପାଠକ ଓ ଅସହିଷ୍ଣୁ ଜନସମାଜ ଏହାକୁ ପ୍ରତ୍ୟାଖ୍ୟାନ କରିଥିବାରୁ ଏହାର ସାହିତ୍ୟିକମାନେ ବହୁରୂପୀ ଭଳି ରୂପ ବଦଳାଇଛନ୍ତି । ମାର୍କସ୍‌ଙ୍କ ଦର୍ଶନ ତଥା ଗର୍କି ଓ ଦସ୍ତୟୋଭସ୍କିଙ୍କ ସାହିତ୍ୟିକ ପ୍ରତିଭାରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଶାରେ ଯେଉଁମାନେ କବିତା ଲେଖିଛନ୍ତି ସେମାନଙ୍କ ମଧ୍ୟରେ ସଚ୍ଚିଦାନନ୍ଦ ରାଉତରାୟ ଅନ୍ୟତମ । ମାତ୍ର ସଚ୍ଚିଦାନନ୍ଦ ରାଉତରାୟଙ୍କ ସଂପର୍କରେ ଯେଉଁ କେତୋଟି ଗବେଷଣା କରାଯାଇଛି ତହିଁରେ ତୁଳନାତ୍ମକ ଦିଗଟି ନ୍ୟୂନ ହୋଇଯାଇଛି । ଯଦିଚ ପ୍ରକୃତପକ୍ଷେ, ସଚ୍ଚି ରାଉତରାୟ ଜଣେ ପ୍ରଭାବିତ କବି "ସଚ୍ଚି ରାଉତରାୟଙ୍କ 'ପାଣ୍ଡୁଲିପି' ଏକ ନୂତନ ଯୁଗର ପ୍ରସୁତି" ନିବଂଧରେ ଡ଼ଃ. ମଥୁରାନାଥ ହୋତା ସଚ୍ଚିବାବୁଙ୍କର ସାହିତ୍ୟିକ ଦିଗନ୍ତକୁ ନିର୍ଣ୍ଣୟ କରିବା ପାଇଁ ଚେଷ୍ଟା କରିଛନ୍ତି । ସଚ୍ଚିଦାନନ୍ଦଙ୍କ ଉପରେ ରବୀନ୍ଦ୍ରନାଥ ଠାକୁର, ବୁଦ୍ଧଦେବ ବସୁ, ଜୀବନାନନ୍ଦ ଦାସ, ଟି.ଏସ୍. ଇଲିୟଟ, ଏଜରା ପାଉଣ୍ଡ ପ୍ରଭୃତିଙ୍କ ପ୍ରଭାବ ଏହି ଗ୍ରନ୍ଥଟିରେ ଆଲୋଚିତ । ସଚ୍ଚି ରାଉତରାୟଙ୍କସଂପର୍କରେ ଅନ୍ୟ ଏକ ଗବେଷଣା ନିବଂଧ ପ୍ରସ୍ତୁତ କରିଛନ୍ତି ଡ଼ଃ. ଅରୁଣା ମହାନ୍ତି । ନିବଂଧଟିର ଶୀର୍ଷକ 'ସଚ୍ଚି ରାଉତରାୟଙ୍କ କବିତାରେ ନାରୀ ।' ଏଥିରେ ଆଲୋଚିକା ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ନାରୀର ସ୍ୱରୂପକୁ ଦର୍ଶାଇବା ସହିତ ସଚ୍ଚି ରାଉତରାୟ ତଥା ତାଙ୍କ ଉତ୍ତରପୁରୁଷ ମାନଙ୍କ ନିକଟରେ ନାରୀ କେଉଁପରି ଚିତ୍ରିତା ତାହାର ଏକ ରୂପରେଖ ପ୍ରଦାନ କରିଛନ୍ତି । ସବୁଜ ଓ ପ୍ରଗତିରିର ସମସାମୟିକ ଓଡ଼ିଆ ସାହିତ୍ୟ ତଥା ସାହିତ୍ୟିକମାନଙ୍କ ସଂପର୍କରେ ପରିମାଣ ଦୃଷ୍ଟିରୁ ତୁଳନାତ୍ମକ ଗବେଷଣା ହୋଇନାହିଁ । କେତୋଟି ଉତ୍କୃଷ୍ଟ ଧରଣର ପ୍ରବଂଧରେ ଏ ଆଲୋଚନା ସୀମିତ ଅଛି ମାତ୍ର । ତେବେ କବି ମାନସିଂହ ଓ ଔପନ୍ୟାସିକ ଫଣୀଶ୍ୱରନାଥ ରେଣୁଙ୍କ ସହିତ ତୁଳନା କରି ଗେବେଷଣା ନିବଂଧ ପ୍ରସ୍ତୁତ କରା ଯାଇଛି । ଏଥି ସହିତ ଡ଼ଃ. ଦାମୋଦର ମିଶ୍ର 'ହିନ୍ଦି ଓ ଓଡ଼ିଆ ପ୍ରଗତିଶୀଳ କବିତା' ସଂପର୍କରେ ଗବେଷଣା କରିଛନ୍ତି । ଓଡ଼ିଆ କବିତାର ଉପାଦାନ ଅଭାବରୁ ନିବଂଧଟି ସଂପୂର୍ଣ୍ଣ ହେବା ପରି ମନେହୁଏନାହିଁ । କବି କାଳିନ୍ଦୀଚରଣଂକୁ ହିନ୍ଦୀକବି ନିରାଲାଙ୍କ ସହିତ ତୁଳନା କରି ଗବେଷକ ଡ଼ଃ କୁନା ପଣ୍ଡା ଭାରତୀୟ ସାହିତ୍ୟରେ ଏମାନଙ୍କୁ ଦୁଇଟି ବିସ୍ମୟ ବୋଲି କହିଛନ୍ତି । ଡ଼ଃ ହୃଷୀକେଶ ପଣ୍ଡାଙ୍କର 'ରବୀନ୍ଦ୍ର ସମକାଳୀନ ଓଡ଼ିଆ କବିତା' ଏହି ସମୟରେ ପ୍ରକାଶିତ ଏକ ଉପଯୁକ୍ତ ତୁଳନାତ୍ମକ ଗବେଷଣା ଗ୍ରନ୍ଥ । ଏହି ଲେଖକ ଔପନ୍ୟାସିକ କାହ୍ନୁଚରଣ ଓ ଶରତଚନ୍ଦ୍ର ଚଟ୍ଟୋପାଧାୟଙ୍କ ଉପନ୍ୟାସ ସଂପର୍କରେ ତୁଳନାତ୍ମକ ଗବେଷଣା କରି କାହ୍ନୁଚରଣଙ୍କୁ ଓଡ଼ିଶାର ଶରତଚନ୍ଦ୍ର ଭାବରେ ପରିଗଣିତ କରାଇବାକୁ ଚେଷ୍ଟା କରିଛନ୍ତି । ଉଭୟଙ୍କ ଉପନ୍ୟାସର କଥାବସ୍ତୁ, ଚରିତ୍ର ଭାଷାଶୈଳୀ, ପରିବେଶ ଓ ଦୃଷ୍ଟିକୋଣର ସାମ୍ୟ ପ୍ରଦର୍ଶନରେ ନିବଂଧଟି ବିସ୍ତୃତ । ନିକଟରେ ଶେଷ ହେବାକୁ ଯାଉଥିବା ତୁଳନାତ୍ମକ ଗବେଷଣା 'ଗୋପୀନାଥ ଓ ତାରାଶଙ୍କରଙ୍କ ଉପନ୍ୟାସ: ଏକ ତୁଳନାତ୍ମକ ଅଧ୍ୟୟନ' (ସଂଗୀତା ଜେନା) ଔପନ୍ୟାସିକ ଦ୍ୱୟଙ୍କ ସଂପର୍କରେ କିଛି ନୂତନତା ପ୍ରଦାନ କରିବାର ସଂଭାବନା ରଖିଛି ।

ପ୍ରଗତିଯୁଗ ପରବର୍ତ୍ତୀ ସମୟକୁ ଓଡ଼ିଆ ସାହିତ୍ୟରେ ଅତ୍ୟାଧୁନିକ ଯୁଗ କୁହାଯାଉଛି । ଏହି ସମୟରେ ସାହିତ୍ୟର ପ୍ରାୟ ପ୍ରତ୍ୟେକ ବିଷୟରେ ଉଚ୍ଚତର ଗବେଷଣା ଆରମ୍ଭ ହେଇଛି । ସାହିତ୍ୟିକ, ସାହିତ୍ୟିକ କୃତି ଓ ସାହିତ୍ୟ ଯୁଗ ସଂପର୍କରେ ବହୁ ତୁଳନାତ୍ମକ ଗ୍ରନ୍ଥ ପ୍ରକାଶ ପାଇଛି ।

ନାଟକ, ଉପନ୍ୟାସ, ରମ୍ୟରଚନା, ପ୍ରବଂଧ ଓ ଗଳ୍ପ ପ୍ରତି ତୁଳନାତ୍ମକ ଦୃଷ୍ଟି ନିକ୍ଷେପ କରିବାରେ ଓଡ଼ିଆ ଗବେଷକଗଣ ଅବହେଳା କରିଛନ୍ତି ବୋଲି କୁହାଯାଇପାରିବ ନାହିଁ । ତୁଳନାତ୍ମକ ସାହିତ୍ୟର ତତ୍ତ୍ୱ ଦୃଷ୍ଟିରୁ ବିଚାର କରି ବହୁ ଗବେଷଣା ନିଜର ନିଷ୍କର୍ଷ ପ୍ରଦାନ କରିଛି । ଏଣୁ ତୁଳନାତ୍ମକ ଗବେଷଣା ଏକ ସ୍ୱତନ୍ତ୍ର ବିଷୟଭାବରେ ପରିଗଣିତ ହେଲା ବୋଲି କୁହାଯାଇପାରେ ।

ନାଟ୍ୟ-ସମାଲୋଚକଗଣ ବିଷୟବୈଚିତ୍ର୍ୟ ଦୃଷ୍ଟିରୁ ନାୟକକୁ ବହୁଧା ବିଭକ୍ତ କରିଥିଲେ ହେଁ ପ୍ରାଚ୍ୟ ପାଶ୍ଚାତ୍ୟ ପରିପ୍ରେକ୍ଷୀରେ ସେ ସବୁର ସ୍ଥାନ ନିର୍ଣ୍ଣୟ କରିବାକୁ ଉଦ୍ୟମଶୀଳ । ଏ କ୍ଷେତ୍ରରେ ଡ଼ଃ ହେମନ୍ତ କୁମାର ଦାସ, ଡ଼ଃ ନୀଳାଦ୍ରିଭୂଷଣ ହରିଚନ୍ଦନ, ଡ଼ଃ. ରତ୍ନାକର ଚଇନି ଓ ଡ଼ଃ. ସଂଘମିତ୍ରା ମିଶ୍ରଙ୍କ ଉଦ୍ୟମ ଉଲ୍ଲେଖଯୋଗ୍ୟ । ଡ଼ଃ. ଦାସ ତାଙ୍କ ଗବେଷଣା ନିବଂଧ 'ଓଡ଼ିଆ ନାଟକ : ଉଦ୍ଭବ ଓ ବିକାଶ'ରେ ଆଦି ଯୁଗର ଓଡ଼ିଆ ନାଟ୍ୟକାରମାନଙ୍କ ଉପରେ ପାଶ୍ଚାତ୍ୟ ପ୍ରଭାବକୁ ଚମତ୍କାର ଭାବରେ ପ୍ରକାଶ କରିଛନ୍ତି । ଡ଼ଃ. ଚଇନି ମଧ୍ୟ 'ଉଭଟ ନାଟ୍ୟପରଂପରା' ଗ୍ରନ୍ଥରେ ଉଭଟତାର ସୃଷ୍ଟି ଇତିହାସ ସହିତ ଓଡ଼ିଆ ନାଟ୍ୟକାରଗଣ କେତେଦୂର ତହିଁରେ ସାର୍ଥକ, ତାର ଏକ ତୁଳନାତ୍ମକ ପରିସର ସୃଷ୍ଟି କରିଛନ୍ତି । ଡ଼ଃ. ହରିଚନ୍ଦନ ତାଙ୍କ 'ଓଡ଼ିଆ ନାଟକରେ ଇତିହାସର ପ୍ରତିଧ୍ୱନି' ଓ 'ଆଧୁନିକ ଓଡ଼ିଆ ନାଟକରେ ଉଭଟ ଓ ବାସ୍ତବ ଚେତନା' ଗ୍ରନ୍ଥରେ ବହୁ ନାଟକ ତଥା ନାଟ୍ୟକାରଙ୍କୁ ତୁଳନାତ୍ମକ ଦୃଷ୍ଟିରେ ଆଲୋଚନା କରିବା ସହିତ ଏହାର କ୍ଷେତ୍ରକୁ ବିସ୍ତୃତି ପ୍ରଦାନ କରିଛନ୍ତି । 'ସଂପ୍ରତି ଆଧୁନିକ ଓଡ଼ିଆ ଓ ହିନ୍ଦି ନାଟକରେ ପ୍ରତୀକ' ଶୀର୍ଷକ ତୁଳନାତ୍ମକ ଗବେଷଣା ପ୍ରସ୍ତୁତ କରି ଡ଼ଃ. ସଂଘମିତ୍ରା ମିଶ୍ର ଡି.ଲିଟ୍. ଉପାଧିଭୂଷିତା । ଏଥି ସହିତ ନାଟ୍ୟ ସାହିତ୍ୟରେ ଅଧିକ ତୁଳନାତ୍ମକ ଗବେଷଣା ପାଇଁ ସେ ବର୍ତ୍ତମାନ ମଧ୍ୟ ଏକ ଗବେଷଣା ପ୍ରକଳ୍ପର ଅଧିକାରୀ। ଏସବୁ ବ୍ୟତୀତ 'ଆଧୁନିକ ଆମେରିକୀୟ ନାଟକ ଓ ଓଡ଼ିଶାର ନବନାଟ୍ୟଧାରା : ଏକ ତୁଳନାତ୍ମକ ବିଶ୍ଳେଷଣ', 'ଭରତ ଏବଂ ଆରିଷ୍ଟଟଲଙ୍କ ନାଟ୍ୟତତ୍ତ୍ୱ : ଏକ ତୁଳନାତ୍ମକ ଅଧ୍ୟୟନ', 'ମନୋରଂଜନ ଦାସ ଓ ସମକାଳୀନ ଭାରତୀୟ ନାଟ୍ୟସାହିତ୍ୟ', 'ଗଣକବି ଗୋପାଳ ଦାସ ଏବଂ ଗଣକବି ବୈଷ୍ଣବ ପାଣି: ଏକ ତୁଳନାତ୍ମକ ଅଧ୍ୟୟନ' ଆଦି ବିଷୟରେ ଯେଉଁ ଗବେଷଣା ହେଉଛି ସେଗୁଡ଼ିକର ସୁଫଳ ନିଶ୍ଚୟ ତୁଳନାତ୍ମକ ଗବେଷଣାର ଭଣ୍ଡାର ବୃଦ୍ଧି କରିବ, ଏହା ନିଃସନ୍ଦେହ ।

ଓଡ଼ିଆ ଉପନ୍ୟାସର ତୁଳନାତ୍ମକ ଗବେଷଣା ବିଭାଗଟି ସମୃଦ୍ଧ ନୁହେଁ । ଅଙ୍ଗୁଳିମେୟ କେତୋଟି ଉନ୍ନତ ପ୍ରବଂଧରେ ଏହାର ପରିସର ପ୍ରାୟତଃ ଆବଦ୍ଧ । 'ଭୀମାଭୂୟାଁ' ଓ ଅସମୀୟା ଉପନ୍ୟାସ 'ମିରିଜିଆରୀ', 'ଛମାଣ ଆଠଗୁଣ୍ଠ ଓ ବିଷବୃକ୍ଷ', 'ଛମାଣ ଆଠଗୁଣ୍ଠ ଓ ଗୋଦାନ : ଏକ ବିହଙ୍ଗାବଲୋକନ', 'ପରଜା ଓ ଅରଣ୍ୟବହ୍ନି' ପ୍ରବଂଧ ଗୁଡ଼ିକରେ ତୁଳନାତ୍ମକ ତତ୍ତ୍ୱର ପ୍ରକାର୍ଯ୍ୟ (Function) ଓ ପ୍ରକ୍ରିୟା (Process) ନିବିଡ଼ଭାବେ ଅନୁଶୀଳିତ । ତଥାପି ଫକୀରମୋହନ, କାହ୍ନୁଚରଣ, ଗୋପିନାଥ ଓ ସୁରେନ୍ଦ୍ର ଆଦି କେତେଜଣ ଔପନ୍ୟାସିକ ଅନ୍ୟ ଭାଷାଭାଷୀ ଔପନ୍ୟାସିକଙ୍କ ସହିତ ତୁଳିତ ହୋଇଛନ୍ତି । ପ୍ରବଂଧ ଓ ରମ୍ୟରଚନାର ତୁଳନାତ୍ମକ ଅଧ୍ୟୟନ ପ୍ରାୟ ନାହିଁ କହିଲେ ଚଳେ । ମାତ୍ର ବହୁ ପ୍ରାବନ୍ଧିକ ଅଛନ୍ତି, ଯେଉଁମାନଙ୍କୁ ଅନ୍ୟଭାଷାର ପ୍ରାବନ୍ଧିକ

ତଥା ଗଦ୍ୟକାରଙ୍କ ସହିତ ତୁଳନା କରାଯାଇପାରନ୍ତା । ଓଡ଼ିଆ ଗଳ୍ପବିଭାଗରେ ତୁଳନାତ୍ମକ ଆଲୋଚନାର ସ୍ରୋତ ମଧ୍ୟ କ୍ଷୀଣ । ଡ଼ଃ. ବୈଷ୍ଣବଚରଣ ସାମଲ, କିଶୋରୀ ଚରଣ ଦାସ, ମହାପାତ୍ର ନୀଳମଣି ସାହୁ, ଭୁବନାନନ୍ଦ ସାହୁ , ଡ଼ଃ. ପୂର୍ଣ୍ଣାନନ୍ଦ ଦାନୀ ପ୍ରମୁଖଙ୍କ ଆଲୋଚନା ଗଳ୍ପପାଠକ ଓ ଗବେଷକଙ୍କ ପାଇଁ ନୂଆ ପଥ ନିର୍ମାଣି ପାରିଛି । ଡ଼ଃ. ସାମଲ ଓଡ଼ିଆ ଗାଳ୍ପିକଙ୍କ ଠାରେ ପାଶ୍ଚାତ୍ୟ ପ୍ରଭାବକୁ ଲକ୍ଷ୍ୟ କରିବା ସ୍ଥଳେ ଡ଼ଃ ଦାନୀ ଓଡ଼ିଆ, ବଂଗଳା, ଅସମୀୟା, ଆଦି ଗଳ୍ପର ସାମ୍ୟ-ବୈଷମ୍ୟ ନିରୂପଣ କରିଛନ୍ତି । ବିଧିବଦ୍ଧ ଭାବରେ କୌଣସି ଗାଳ୍ପିକଙ୍କ ସହ ଅନ୍ୟ ଜଣେ ଗାଳ୍ପିକଙ୍କର ତୁଳନାତ୍ମକ ଅଧ୍ୟୟନ ପ୍ରାୟତଃ ହୋଇନାହିଁ ।

ସାହିତ୍ୟର ବିଭିନ୍ନ ବିଭାଗ ପରି ଲୋକ-ସାହିତ୍ୟ ଓ ଲୋକ-ସଂସ୍କୃତିର ପ୍ରଭାବ ସୁଦୂର ପ୍ରସାରୀ । ବହୁ ଶ୍ରଦ୍ଧାଶୀଳ ଗବେଷକ ବର୍ତ୍ତମାନ ଏହାର ଭୂମିକାକୁ ଉପଲବ୍ଧି କରି ଏହାର ଆନ୍ତଃଶୃଙ୍ଖଳା ଭିତ୍ତିକ ଗବେଷଣା ପ୍ରତି ମନବଳାଇଲେଣି । ଡ଼ଃ. ପ୍ରସନ୍ନ କୁମାର ମିଶ୍ରଙ୍କ 'ପୂର୍ବଭାରତର ହିନ୍ଦୁ ଲୋକ-ମିଥ୍: ଓଡ଼ିଶା' ଗ୍ରନ୍ଥ ଓଡ଼ିଶା, ବଂଗ ଓ ଆସାମ ଅଞ୍ଚଳରେ ପ୍ରଚଳିତ ଓଷାବ୍ରତ କଥା, ଠାକୁର ଠାକୁରାଣୀ କଥା, ଅଣ-ପୌରାଣିକ ଲୋକବୃତ୍ତ ଓ ଆଚାର-ବିଚାର-ସଂସ୍କାର ଆଦିର ଏକ ତାତ୍ତ୍ୱିକ ଗବେଷଣା । ସଂଭବତଃ ଓଡ଼ିଆରେ ଏହାହିଁ ପ୍ରଥମ ତୁଳନାତ୍ମକ ଲୋକସାହିତ୍ୟ ଗବେଷଣା ନିବଂଧ । ଡ଼ଃ ଶ୍ୟାମସୁନ୍ଦର ମହାପାତ୍ର ମଧ୍ୟ ଲୋକସାହିତ୍ୟର ତୁଳନାତ୍ମକ ଚର୍ଚ୍ଚାରେ ଜଣେ ଅଗ୍ରଣୀ ଗବେଷକ । ସେ ତାଙ୍କର 'Oriya Ballads', 'ସାନ୍ତାଳ ଓ ଓଡ଼ିଆ ଲୋକକାହାଣୀ' ଆଦି ଗ୍ରନ୍ଥରେ ପାରସ୍ପରିକ ବିନିମୟର ହେତୁ ନିରୂପଣ କରିଛନ୍ତି ।

ଓଡ଼ିଆ ସାହିତ୍ୟରେ ପ୍ରାଚୀନ କବି ଓ କବିତାର ତୁଳନାମୂଳକ ଗବେଷଣା ଯେତେ ପରିମାଣରେ ହେଇଛି, ଆଧୁନିକ ଓଡ଼ିଆ କବିତା ସଂପର୍କରେ ସେତିକି ନାହିଁ । ତଥାପି ବିଭିନ୍ନ 'ବାଦ' ଗୁଡ଼ିକର ପ୍ରଭାବକୁ ଗବେଷକ ଏଡ଼ାଇ ପାରିନାହାନ୍ତି । ଡ଼ଃ. ପ୍ରତିଭା ଶତପଥୀଙ୍କ 'ଆଧୁନିକ ଓଡ଼ିଆ କବିତାରେ ରୋମାଣ୍ଟିସିଜିମ୍', ଡ଼ଃ. ସୌଦାମିନୀ ଚୌଧୁରୀଙ୍କର 'ଆଧୁନିକ ଓଡ଼ିଆ କବିତାର ମିଷ୍ଟିସିଜିମ୍ ' ଓ ଡ଼ଃ. ଆଦିକନ୍ଦ ସାହୁଙ୍କ 'ଉତ୍ତର ପଚାଶ ଓଡ଼ିଆ କବିତାରେ ଅସ୍ତିତ୍ୱବାଦୀ ଚେତନା' ଆଦି ଗବେଷଣା ନିବନ୍ଧଗୁଡ଼ିକରେ ରୋମାଣ୍ଟିସିଜିମ୍ , ମିଷ୍ଟିସିଜିମ୍ ଓ ଅସ୍ତିତ୍ୱବାଦର ଆଲୋକରେ ଓଡ଼ିଆ କବି ଓ କବିତାର ଆକଳନ କରିଛନ୍ତି । ଏସବୁ ବ୍ୟତୀତ ଆଧୁନିକ ଓଡ଼ିଆ କବିତାରେ ମିଥ୍‌ର ପ୍ରୟୋଗ, ପଲ୍ଲୀ ଚେତନା ଓ ପ୍ରକୃତି ଆଲୋଚନାରେ ଗବେଷକଙ୍କ ତୁଳନାତ୍ମକ ଦୃଷ୍ଟିଭଂଗୀ ପରିଲକ୍ଷିତ ।

ସଂପ୍ରତି ତୁଳନାତ୍ମକ ଗବେଷଣା ଏକ ଆବିଷ୍କାର ଭାବରେ ପରିଗଣିତ । ଏହାର ବିସ୍ତୀର୍ଣ୍ଣ ପରିମଣ୍ଡଳ ପୃଥିବୀର ସବୁ ସ୍ଥାନରେ ଗୋଟିଏ ଗୋଟିଏ, ସ୍ୱତନ୍ତ୍ର ଆସନ ଗ୍ରହଣ କରିବା ସହିତ ଏ ବିଦ୍ୟା ଏକ ତୃତୀୟ ସାହିତ୍ୟିକ କ୍ଷେତ୍ର ନିର୍ମାଣ କରିସାରିଲାଣି । ସୁତରାଂ ଏହାର ବହୁ ତତ୍ତ୍ୱଗ୍ରନ୍ଥ ରଚନା ହେବା ସ୍ୱାଭାବିକ । ଓଡ଼ିଆ ଭାଷାରେ ମଧ୍ୟ ତୁଳନାତ୍ମକ ସାହିତ୍ୟର ତତ୍ତ୍ୱଗ୍ରନ୍ଥ ଓ ପ୍ରବଂଧମାନ ଉନ୍ନତମାନର ହେଇ ରଚିତ । ତୁଳନାତ୍ମକ ସାହିତ୍ୟର ତତ୍ତ୍ୱ ସଂପର୍କରେ ଓଡ଼ିଶାରେ ବହୁ ପୂର୍ବରୁ

କାଁଭାଁ ଲେଖା ଯାଇଥିଲେ ହେଁ ସଂଭବତଃ ଡ଼ଃ. ଖଗେଶ୍ୱର ମହାପାତ୍ର ପ୍ରଥମେ ତାଙ୍କ 'ସମାଲୋଚନାର ଦିଗଦିଗନ୍ତ' ଗ୍ରନ୍ଥରେ 'ତୁଳନାତ୍ମକ ସାହିତ୍ୟ : ସଂଜ୍ଞା ଓ ଶୃଙ୍ଖଳା' ନାମରେ ପ୍ରବଂଧଟିଏ ଲେଖିଲେ ଏହାର ଏକ ପରିବର୍ତ୍ତିତ ରୂପ 'ତୁଳନାତ୍ମକ ସାହିତ୍ୟ' ଶୀର୍ଷକରେ ୧୯୮୩ ମସିହାରେ ପ୍ରକାଶିତ ଡ଼ଃ. କାହ୍ନୁ ଚରଣ ମିଶ୍ରଙ୍କ ଷଷ୍ଟିପୂର୍ତ୍ତି ଉପଲକ୍ଷେ ଅଭିନନ୍ଦନ ଗ୍ରନ୍ଥରେ ସ୍ଥାନିତ । ଏହି ଗ୍ରନ୍ଥରେ ମଧ୍ୟ ଡ଼ଃ. ନରେନ୍ଦ୍ରନାଥ ମିଶ୍ର 'ତୁଳନାତ୍ମକ ସାହିତ୍ୟର ଆଲୋକରେ ଓଡ଼ିଆ ସାହିତ୍ୟ ଚର୍ଚ୍ଚା' ଶୀର୍ଷକରେ ପ୍ରବଂଧଟିଏ ଲେଖିଥିଲେ । ୧୯୮୪ ମସିହାରେ ଓଡ଼ିଆ ଗବେଷଣା ପରିଷଦ 'ତୁଳନାତ୍ମକ ସାହିତ୍ୟ' (ଏକ ସଂପାନ) ନାମରେ ପୁସ୍ତକଟିଏ ପ୍ରକାଶ କରିଥିଲେ । ଏହି ବହିରେ ତୁଳନାତ୍ମକ ସାହିତ୍ୟ ସଂପର୍କରେ ପ୍ରାଥମିକ ଜ୍ଞାନ ଆହରଣ ପାଇଁ ଯେଉଁ କେତୋଟି ଉପାଦେୟ ପ୍ରବଂଧ ନିହିତ, ସେଗୁଡ଼ିକ ହେଲା, ଯଥାକ୍ରମେ 'ତୁଳନାତ୍ମକ ସାହିତ୍ୟ' (ଡ଼ଃ. ନରେନ୍ଦ୍ରନାଥ ମିଶ୍ର) 'ତୁଳନାତ୍ମକ ସାହିତ୍ୟ : କଣ, କାହିଁକି ଓ କେବେ ?' (ଡ଼ଃ. ଅନନ୍ତ ଚରଣ ଶୁକ୍ଳ ) 'ଭାରତୀୟ ସାହିତ୍ୟରେ ତୁଳନାତ୍ମକ ଅଧ୍ୟୟନ' (ଡ଼ଃ. ଆଦିକନ୍ଦ ସାହୁ) ପ୍ରଭୃତି । ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବାରିକ ୧୯୮୫ ମସିହାରେ ନଭେମ୍ବର ସଂଖ୍ୟା 'ସପ୍ତର୍ଷି'ରେ 'ତୁଳନାତ୍ମକ ବିଚାରଭଂଗୀ ଏବଂ ଓଡ଼ିଆ ସାହିତ୍ୟରେ ତାର ପ୍ରଥମ ପ୍ରତିଧ୍ୱନି' ନାମରେ ଏକ କ୍ଷୁଦ୍ର ପ୍ରବଂଧ ଲେଖି ତହିଁରେ ତତ୍ତ୍ୱ ଓ ପ୍ରୟୋଗ କରିଛନ୍ତି । ୧୯୮୭ ମସିହାରେ ଡ଼ଃ. ଆଦିକନ୍ଦ ସାହୁ ତାଙ୍କର 'କଳାଗୌରବ' ଗ୍ରନ୍ଥରେ ତୁଳନାତ୍ମକ ସାହିତ୍ୟ ନାମରେ ଯେଉଁ ତାତ୍ତ୍ୱିକ ପ୍ରବଂଧଟିଏ ଲେଖିଲେ, ତାହା ସାଧାରଣ ତଥା ତୁଳନାତ୍ମକ ସାହିତ୍ୟପ୍ରେମୀ ପାଠକର ସହଜବୋଧ୍ୟ ହୋଇପାରିନାହିଁ । ମାତ୍ର ୧୯୯୬ରେ 'ସ୍ୟମନ୍ତକ' ପତ୍ରିକାରେ ଡ଼ଃ. ସାହୁଙ୍କର ପ୍ରକାଶିତ 'ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ' ପ୍ରବଂଧ ବେଶ୍ ହୃଦ୍ୟ ଓ ମନନଶୀଳ । ସୁଖର କଥା ଯେ, ୧୯୯୩ ମସିହାରେ ତୁଳନାତ୍ମକ ସାହିତ୍ୟର ତତ୍ତ୍ୱ ଓ ପ୍ରୟୋଗ ଭଳି ଦୁଇଖଣ୍ଡ ଗ୍ରନ୍ଥ ପ୍ରକାଶ ପାଇଲା । ପ୍ରଥମଟି ଫେବୃୟାରୀ ମାସରେ ଓଡ଼ିଆ ବିଭାଗ, ବିଶ୍ୱଭାରତୀର 'ବିଶ୍ୱଭାରତୀ ଦୀପିକା (୧୪) ତୁଳନାତ୍ମକ ସାହିତ୍ୟସଂଖ୍ୟା' ନାମରେ ଓ ଅନ୍ୟଟି ଡ଼ଃ. ନିତ୍ୟାନନ୍ଦ ନାୟକଙ୍କ ଦ୍ୱାରା ରଚିତ 'ତୁଳନାତ୍ମକ ସାହିତ୍ୟ : ତତ୍ତ୍ୱ ଓ ପ୍ରୟୋଗ' ଶୀର୍ଷକରେ । ବହି ଦୁଇଟି ତୁଳନାତ୍ମକ ସାହିତ୍ୟ ତତ୍ତ୍ୱ ପ୍ରତି ଆଗ୍ରହୀ ପାଠକଙ୍କ ଆଶାକୁ ଅନେକାଂଶରେ ପୂରଣ କରିଛି । ପ୍ରଥମ ଗ୍ରନ୍ଥଟିର ସଂପାଦକୀୟରେ ଡ଼ଃ. ନୀଳାଦ୍ରିଭୂଷଣ ହରିଚନ୍ଦନଙ୍କ ଉକ୍ତି ଯଥାର୍ଥ ବୋଲି ମନେହୁଏ । ତାଙ୍କ ମତରେ ସାଂପ୍ରତିକ ଦୃଷ୍ଟିକୋଣ ଏପରି ସଂପ୍ରସାରିତ ହୋଇଯାଇଛି ଯେ, ଓଡ଼ିଆ ସାହିତ୍ୟପ୍ରେମୀମାନଙ୍କର ଚିନ୍ତା କେବଳ ଭାରତ ବର୍ଷ ଭିତରେ ସୀମିତ ରହୁନାହିଁ, ପୃଥିବୀର ବହୁ ଉନ୍ନତ ରାଷ୍ଟ୍ରର ସାହିତ୍ୟକୁ ସ୍ପର୍ଶ କରୁଛି । ପ୍ରତିଭାବାନ୍ ଲେଖକମାନଙ୍କର ନୂତନ ଚେତନାକୁ ଗ୍ରହଣ କରିବାର ଉନ୍ମୁଖତା ମୂଳରେ ଏହା ଲକ୍ଷ୍ୟ କରାଯାଇପାରେ । ଏହି ଦୃଷ୍ଟିରୁ ଆଜି ଓଡ଼ିଆ ଭାଷା ସାହିତ୍ୟର ଛାତ୍ରମାନଙ୍କର ତୁଳନାତ୍ମକ ସାହିତ୍ୟ ସଂପର୍କରେ ଧାରଣା ରହିବାର ଆବଶ୍ୟକତା ଉପଲବ୍ଧ ହେଉଛି । (ବିଶ୍ୱଭାରତୀ ଦୀପିକା: ୧୪, ୧୯୯୩) । ଏଥିରେ ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ଉଦ୍ଦେଶ୍ୟରେ ପ୍ରେରଣା ଦିଆଯାଇଥିବା ସ୍ଥଳେ ଡ଼ଃ. ନାୟକଙ୍କ ଗ୍ରନ୍ଥରେ ତୁଳନାତ୍ମକ ସାହିତ୍ୟର ଆଭିମୁଖ୍ୟ ବିଶଦ ଭାବେ ଆଲୋଚିତ । ତାଙ୍କ ମତରେ 'ସାହିତ୍ୟ ଆଲୋଚନା ଓ ଅଧ୍ୟୟନ ପାଇଁ ସାଧାରଣ ଆଲୋଚନା ଅପେକ୍ଷା

ତୁଳନାତ୍ମକ ପ୍ରକ୍ରିୟା ଅତ୍ୟନ୍ତ ମହତ୍ୱ ପୂର୍ଣ୍ଣ' । ଏହାଦ୍ୱାରା କେବଳ ଗୋଟିଏ ସାହିତ୍ୟ ନୁହେଁ, ଦୁଇ କିମ୍ବା ତତୋଧିକ ସାହିତ୍ୟର ଯଥାର୍ଥ ସ୍ୱରୂପ, ପ୍ରରୂପ, ବୈଶିଷ୍ଟ୍ୟ ଓ ଆଭିମୁଖ୍ୟ ସଂପର୍କରେ ଜ୍ଞାନାର୍ଜନ ସହିତ ଅନ୍ୟ ସାହିତ୍ୟରେ ଥିବା ସାର୍ବଜନୀନ ଭାବ ସହିତ ପରିଚୟ ଘଟିଥାଏ । ଏଥିରେ ସମୟ, ସ୍ଥାନ କେବଳ ନୁହେଁ, ଭିନ୍ନ ଭିନ୍ନ ଭାଷା, ଜାତି ଓ ସଂସ୍କୃତି ଆଧାରିତ ସାହିତ୍ୟର ବିଶ୍ଲେଷଣ କରାଯାଇଥାଏ । ଏହି ଭିନ୍ନତା ମଧ୍ୟରେ ଯେଉଁ ସାମ୍ୟ, ସଂହତି, ଐକ୍ୟ ଓ ମୈତ୍ରୀ ନିହିତ, ତାହା ତୁଳନାତ୍ମକ ସାହିତ୍ୟ ମାଧ୍ୟମରେ ସୁସ୍ପଷ୍ଟ ହୋଇଉଠିଥାଏ । ତେଣୁ ସାଧାରଣ ଆଲୋଚନା ଅପେକ୍ଷା ତୁଳନାତ୍ମକ ସାହିତ୍ୟରେ ଏହି ସାର୍ବଜନୀନ ଉପାଦନଗୁଡ଼ିକର ଯଥାର୍ଥ ପରିଚୟ ମିଳିଥାଏ ।''

ଓଡ଼ିଆ ସାହିତ୍ୟରେ ବହୁ ତୁଳନାତ୍ମକ ଗ୍ରନ୍ଥ ରଚିତ । ଏଗୁଡ଼ିକ ବିଶ୍ୱବିଦ୍ୟାଳୟର ଡିଗ୍ରୀ ପାଇନଥିଲେହେଁ ଗୁଣାତ୍ମକ ମୂଲ୍ୟ ଦୃଷ୍ଟିରୁ ଏ ସବୁର ମାନ ଖୁବ୍ ଉଚ୍ଚରେ । ୧୯୭୩ ରେ ପ୍ରକାଶିତ ଅଧ୍ୟାପିକା ଆଶା ମିଶ୍ରଙ୍କ 'ଆସାମ ଓ ଓଡ଼ିଶାର ସାଂସ୍କୃତିକ ସଂପର୍କ' ଓ ଡ଼ଃ. ଦାଶରଥି ଦାଶଙ୍କ 'କାବ୍ୟସଂଧାନ' ଦୁଇଟି ସାବଲୀଳ ଶୈଳୀରେ ରଚିତ ତଥ୍ୟଯୁକ୍ତ ଗ୍ରନ୍ଥ । ପ୍ରଥମଟିରେ ଓଡ଼ିଶା ଓ ଆସାମର ଆଖ୍ୟାନ, ଦେବଦେବୀ, ଇତିହାସ ଧର୍ମ, ଲୋକ-ସାହିତ୍ୟ ଆଲୋଚିତ ହେବାବେଳେ ଦ୍ୱିତୀୟଟିରେ ଓଡ଼ିଶାର ପ୍ରତିଷ୍ଠିତ କବିମାନଙ୍କ ମହିମା ବର୍ଣ୍ଣିତ । ଗ୍ରନ୍ଥର ପ୍ରାକ୍‌କଥନରେ ଡ଼ଃ ଦାସ କହନ୍ତି- 'ଯେଉଁମାନଙ୍କ କଥା ଏହି ଗ୍ରନ୍ଥରେ କୁହାଯାଇଛି, ସେମାନେ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠିତ କବି ମାତ୍ର ନୁହନ୍ତି, ଆମ ଭାଷା ଓ ସାହିତ୍ୟର ସବୁ ଐଶ୍ୱର୍ଯ୍ୟ ଓ ଆଭିଜାତ୍ୟ ସେମାନଙ୍କ ରଚନାକୁ ଆଶ୍ରୟକରି ତିଷ୍ଠିଛି । ପୂର୍ବବର୍ତ୍ତୀ କବିମାନଙ୍କ ସହିତ ବିଚାରକୁ ଆଣି ସାମ୍ୟ ଓ ବୈଷମ୍ୟରେ ସେମାନଙ୍କୁ ସ୍ପଷ୍ଟ ଉଜ୍ଜ୍ୱଳ କରି ଦେଖିବାର ପ୍ରଲୋଭନ ମାତ୍ର ଲେଖକ ରଖିଛି । '' (କାବ୍ୟସଂବାଦ, ପ୍ରାକ୍‌କଥନ,)

ଓଡ଼ିଆ ସାହିତ୍ୟରେ ପ୍ରାୟ ଅଢ଼େଇଶହ ପାଖାପାଖି ତୁଳନାତ୍ମକ ପ୍ରବନ୍ଧ ଲେଖାଯାଇଛି । ନିବଂଧ ମଧ୍ୟ ହେଲାଣି ପ୍ରାୟ ଏକଶହ । ହେଲେ ଆଲୋଚନାଗୁଡ଼ିକରେ ମୌଳିକ ସୃଷ୍ଟି ବା ସ୍ରଷ୍ଟାଙ୍କର ସାମ୍ୟ ବା ପ୍ରଭାବ କେବଳ ଆଲୋଚିତ ହେଉଛି, କିନ୍ତୁ ଏହା ସହିତ ବୈଷମ୍ୟ ବା ପ୍ରତିକ୍ରିୟା ମଧ୍ୟ ଆଲୋଚିତ ହେବା ଉଚିତ । ବହୁପ୍ରାବନ୍ଧିକ ତୁଳନାତ୍ମକ ସାହିତ୍ୟର ଉପଗମ ଓ ପଦ୍ଧତି ନଜାଣି ପ୍ରବନ୍ଧ ଲେଖିବାରେ ମନ ଦେଉଥିବା ବେଳେ ଅଧିକାଂଶ ମଧ୍ୟ ତୁଳନାତ୍ମକ ସାହିତ୍ୟର ସଂଜ୍ଞା ଓ ସ୍ୱରୂପ ଜାଣୁନାହାନ୍ତି । ଏଣୁ ଲେଖାଗୁଡ଼ିକ ହେଇଯାଉଛି ବଳଦିଆ ଢ଼ଙ୍ଗର । ସୁତରାଂ ଏଗୁଡ଼ିକ ଯଦି ନିୟମସିଦ୍ଧ ଭାବରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ହୋଇ ଭିନ୍ନ ଭିନ୍ନ ସାହିତ୍ୟ ସହିତ ସମନ୍ୱୟ ସ୍ଥାପନ କରିପାରନ୍ତା ତାହେଲେ ତୁଳନାତ୍ମକ ଚର୍ଚ୍ଚାର ନୁତନ ଦିଗନ୍ତ ସୃଷ୍ଟି ହୁଅନ୍ତା । ତୁଳନାତ୍ମକ ସାହିତ୍ୟ ଏକ ସ୍ୱତନ୍ତ୍ର ଜ୍ଞାନର ଶୃଙ୍ଖଳା ଏଣୁ ଏହାର ସ୍ୱାତନ୍ତ୍ର୍ୟ ବଜାଇ ରଖିବା ଆମର କାମ୍ୟ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ବିଶ୍ୱଭାରତୀ, ଶାନ୍ତିନିକେତନ



# ଓଡ଼ିଆ ଭାଷାଚର୍ଚ୍ଚା : ଆଲୋଚନା ଓ ଗବେଷଣା

ସବିତା ପ୍ରଧାନ

ଓଡ଼ିଆ ଭାଷାଚର୍ଚ୍ଚା ୧୮୦୦ ଶତାବ୍ଦୀରୁ ଆରମ୍ଭ କହିଲେ ଠିକ୍ ହେବ । ଏହି ପର୍ଯ୍ୟାୟକୁ ଡ଼: ଗଗନେନ୍ଦ୍ର ଦାଶ ଫୋର୍ଟ ଉଇଲିୟମ ପର୍ଯ୍ୟାୟ ଭାବେ ନାମିତ କରନ୍ତି । ଫୋର୍ଟ ଉଇଲିୟମ କଲେଜର ଶିକ୍ଷକ ପାଦ୍ରୀ ଉଇଲିୟମ୍ କେରୀଂକ ସହଯୋଗିତାରେ ପୁରୁଷରାମ ନାମକ ଜଣେ ଓଡ଼ିଆ ବ୍ୟକ୍ତି ଓଡ଼ିଆ ଭାଷାର ବ୍ୟାକରଣ ୧୮୦୪-୧୮୦୫ ରେ ପ୍ରସ୍ତୁତ କରୁଥିଲେ, ଯାହା ସମ୍ଭବତଃ ପୁସ୍ତକ ଆକାରରେ ପ୍ରକାଶ ପାଇବା ପୂର୍ବରୁ ଶ୍ରୀରାମପୁର ଅଗ୍ନିକାଣ୍ଡରେ ନଷ୍ଟ ହୋଇଯାଇଥିଲା । ଏହାପରେ ୧୮୧୧ରେ A Vocabulary Oriya, English For use of Students ନାମରେ ମୋହନ ପ୍ରସାଦ ଠାକୁର (ଫୋର୍ଟ ଉଇଲିୟମ୍ କଲେଜର ସହକାରୀ ଲାଇବ୍ରେରୀଆନ୍) ଏକ ପୁସ୍ତକ ପ୍ରକାଶ କରିଥିଲେ ଏଥିରେ ଓଡ଼ିଆ ଶବ୍ଦ ଓ ଏହାର ଇଂରାଜୀ ପ୍ରତିଶବ୍ଦ ଲିପିବଦ୍ଧ । ଶବ୍ଦଗୁଡ଼ିକୁ ୩୨ଟି ଭାଗରେ ବିଭକ୍ତ କରାଯାଇଥିଲା, ମାତ୍ର ଓଡ଼ିଆ ଶବ୍ଦ ଗୁଡ଼ିକ ଅନେକ କ୍ଷେତ୍ରରେ ଭ୍ରମାତ୍ମକ ଥିଲା । ଲଣ୍ଡନସ୍ଥ India office Library and Records ରେ ସଂରକ୍ଷିତ ଏକ ପାଣ୍ଡୁଲିପିରେ ଅଛି ଓଡ଼ିଆ ଭାଷାର ବ୍ୟାକରଣ । ଏହା ସମ୍ଭବତଃ ସବଅଡ଼ିନେଟ୍ ମୁନ୍‌ସୀ ଗଦାଧର ତର୍କବାଗୀଶଙ୍କ (ଫୋର୍ଟ ଉଇଲିୟମ କଲେଜରେ ଖ୍ରୀ ୧୮୦୫ -୧୮୩୦ ପର୍ଯ୍ୟନ୍ତ ଅବସ୍ଥାନ) ରଚନା । ଏତତ୍ ବ୍ୟତୀତ ଖ୍ରୀ ୧୮୧୬ ରେ କେରୀ, ମାର୍ଶମାନ ଓ ୱାର୍ଡ଼ ଭାରତୀୟ ଭାଷାଗୁଡ଼ିକର ତୁଳନାତ୍ମକ ଆଲୋଚନା ଉଦ୍ଦେଶ ରେ ୩୪ଟି ଭାଷା ନମୂନା ସଂଗ୍ରହ କରିଥିଲେ । ତନ୍ମଧ୍ୟରୁ ଓଡ଼ିଆ ଭାଷା ଅନ୍ୟତମ । ଏହା ଭାଷାଚର୍ଚ୍ଚାର ପ୍ରାଥମିକ ପ୍ରୟାସ ଥିଲା । ପରବର୍ତ୍ତୀ ସମୟରେ ଆର୍ଯ୍ୟଭାଷା, ଦ୍ରାବିଡ଼ ଓ ମୁଣ୍ଡା ସ୍ୱତନ୍ତ୍ର ଭାଷା ଓ ସଂସ୍କୃତ ଭାରତୀୟ ଆର୍ଯ୍ୟଭାଷାର ଉପଭାଷା ଆଦି ନିର୍ଣ୍ଣୀତ ହେବାପରେ ଭାଷାଚର୍ଚ୍ଚା ପ୍ରତି ଆଗ୍ରହ ଓ ଆକର୍ଷଣ ବୃଦ୍ଧି ପାଇଲା ।

ଓଡ଼ିଆ ଭାଷାଚର୍ଚ୍ଚାର ଦ୍ୱିତୀୟ ପର୍ଯ୍ୟାୟ (୧୮୩୦-୧୮୭୦) ରେ ମିଶନାରୀମାନଂକ ପ୍ରୟାସରେ ଧର୍ମପ୍ରଚାର ଓ ପ୍ରଶାସନିକ ସୁବିଧା ନିମିତ୍ତ ଓଡ଼ିଆ ଭାଷାର ଅଭିଧାନ ଓ ବ୍ୟାକରଣ ରଚନା ଆରମ୍ଭ ହେଲା । ପରବର୍ତ୍ତୀ ସମୟରେ ଶିକ୍ଷାଗତ ଆବଶ୍ୟକତା ବିଶେଷ ଭାବେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ନିମନ୍ତେ ଭାଷାଚର୍ଚ୍ଚାର ମୋଡ଼ ପରିବର୍ତ୍ତନ ହେଲା । ଏହି ପର୍ଯ୍ୟାୟରେ ରଚିତ ଓଡ଼ିଆ ବ୍ୟାକରଣ :-

୧- An Introductory Grammar of Oriya Language, ଓଡ଼ିୟା ବ୍ୟାକରଣ, (୧୮୩୧) - ଆମସ୍ ସଟନ୍

୨- Ooryah Grammar (୧୮୪୩) - ବିଶ୍ୱମ୍ଭର ବିଦ୍ୟାଭୂଷଣ

୩- Oriya Grammar, ଓଡ଼ିୟା ବ୍ୟାକରଣ ସାର,(୧୮୫୫) -

ଡବଲ୍ୟୁ ସି. ଲେସି.

୪- ପ୍ରବେଶିକା ବ୍ୟାକରଣ (୧୮୫୮) - ପଣ୍ଡିତ ରଘୁନାଥ ମିଶ୍ର

୫- ସରଳ ବ୍ୟାକରଣ (୧୮୬୭) - ଫକୀର ମୋହନ ସେନାପତି

୬- A practical grammar of the Odhra Language, (୧୮୬୯) - ଲିଙ୍ଗମ୍ ଲକ୍ଷ୍ମଜୀ ପଣ୍ଡିତ

୭- ଉତ୍କଳ ବ୍ୟାକରଣ ସଂକ୍ଷେପ, Elements of Ootcul Grammar (୧୮୬୯) - ବିନ୍ଦ ପଟ୍ଟନାୟକ

୮- ବ୍ୟାକରଣ କୌମୁଦୀ (୧୮୭୦)- ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ

୯- Oriya Grammar, ଓଡ଼ିଆ ବ୍ୟାକରଣ, ୩ୟ ସଂସ୍କରଣ (୧୮୭୧)- କୈଳାଶ ଚନ୍ଦ୍ର ଶର୍ମା ଓ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ।

ଓଡ଼ିଆ ଭାଷାର ପ୍ରଥମ ବ୍ୟାକରଣକାର ଭାବେ ଆମସ ସଟନ୍ ଗୌରବର ଅଧିକାରୀ । ଇଷ୍ଟ-ଇଣ୍ଡିଆ କଂପାନୀ ଅନୁରୋଧରେ ଏହା ରଚିତ ବୋଲି ଜଣାଯାଏ । ତେବେ ସଟନ୍‌ଙ୍କର ଅନ୍ୟ ଉଦ୍ଦେଶ୍ୟ ଥିଲା-ଓଡ଼ିଶାର ଗୌରବବାହ ଅତୀତ, ପ୍ରାଚୀନ ସଂସ୍କୃତି, ପୁରାଣ ଓ ପରଂପରା ଜାଣିବାରେ ସହାୟତା କରିବା ତଥା ବିଶେଷଭାବେ ଇଉରୋପୀୟମାନଂକର ଓଡ଼ିଆ ଭାଷାଶିକ୍ଷା ସୁଗମ ଓ ସରଳ କରିବା । ଏହି ବ୍ୟାକରଣ ଗ୍ରନ୍ଥଟି ୩ ଭାଗରେ ବିଭକ୍ତ । ପ୍ରଥମ ଭାଗରେ ଅକ୍ଷର, ଦ୍ୱିତୀୟରେ ଶବ୍ଦ ଓ ଶେଷଭାଗ ବାକ୍ୟ । ଓଡ଼ିଆ ଅକ୍ଷର ସଂପର୍କରେ ତାଂକର ମତାମତ ଯଥାର୍ଥ ଯେ ପ୍ରତ୍ୟେକ ଧ୍ୱନି ପାଇଁ ଅକ୍ଷର ବ୍ୟବସ୍ଥା ରହିଛି । ଶବ୍ଦକୁ ମୁଖ୍ୟତଃ ୨ ଭାଗରେ ବିଭକ୍ତ କରିଛନ୍ତି ।

୧ - Words to be discriminated, ୨ - Discriminating words.

ଓଡ଼ିଆ ବ୍ୟାକରଣର କେତେକ ଅଂଶ ସଂସ୍କୃତ ବ୍ୟାକରଣ ଅନୁସରଣରେ କରାଯାଇଛି । ଯାହା ଫଳରେ କେତେକ ପ୍ରମାଦ ରହିବା ଅତି ସ୍ୱାଭାବିକ । ବାକ୍ୟରୀତି ସଂପୂର୍ଣ୍ଣରୂପେ ମିଶନାରୀ ଗଦ୍ୟଶୈଳୀର । ଅନେକ ପ୍ରତିକୂଳ ଅବସ୍ଥାର ଅବତାରଣା କରିଛନ୍ତି ସଟନ୍ ସାହେବ । ରେଭରେଣ୍ଡଂକ ବାଇବେଲ୍‌ର ଓଡ଼ିଆ ଅନୁବାଦ, କେରୀ ଓ ରାମମୋହନ ରାୟଂକ ବଂଗଳା ବ୍ୟାକରଣ, କ୍ୟାମ୍ପବେଲ୍‌ଂକ ତେଲୁଗୁ ବ୍ୟାକରଣ ସହିତ ତାଂକର ପ୍ରଜ୍ଞା ଓ ପରିଶ୍ରମର ସହଯୋଗରେ ରଚିତ ହୋଇଛି ଓଡ଼ିଆ ବ୍ୟାକରଣ । କୌଣସି ଲିଖିତ ଓଡ଼ିଆ ବ୍ୟାକରଣ କିମ୍ବା ଶିକ୍ଷିତ ବ୍ୟକ୍ତିର ପରାମର୍ଶ ପାଇବା ତାଂକ ପକ୍ଷେ କଠିନ ହୋଇଥିଲା । ଓଡ଼ିଆ ଭାଷା ସଂପର୍କରେ ନାନା ଅନୁକୂଳ ଓ ପ୍ରତିକୂଳ ମତାମତ ଦେଇଥିଲେ ହେଁ ଓଡ଼ିଆ ବଂଗଳା ଭାଷାର ଉଚ୍ଚାରଣଗତ ପାର୍ଥକ୍ୟକୁ ସେ ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି । ଏହାର ୩୮ ବର୍ଷ ପରେ ଲିଙ୍ଗମ ପଣ୍ଡିତଂକ ଓଡ଼ିଆ ବ୍ୟାକରଣ ମଧ୍ୟ ଇଂରାଜୀ ବ୍ୟାକରଣ ଅନୁସରଣରେ ରଚିତ ।

ଶିକ୍ଷା ଓ ପ୍ରଶାସନ କ୍ଷେତ୍ରରେ ଆଂଚଳିକ ଭାଷା ପ୍ରଚଳିତ ହେବାର ସରକାରୀ ନିୟମ

ଲାଗୁହୁଏ ୧୮୩୭ ରେ । ସେହି ସମୟରେ ଓଡ଼ିଶାରେ ଅଧିକାଂଶ ବଂଗାଳୀ ଶାସନ ଓ ଶିକ୍ଷାକ୍ଷେତ୍ରରେ ନିଯୁକ୍ତ । ଇଂରେଜମାନେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଅଜ୍ଞ । ସରକାରୀ ସ୍ତରରେ ବଂଗଳା ଭାଷା ଉଭୟଂକ ନିମନ୍ତେ ସୁବିଧାଜନକ । ତେଣୁ ଓଡ଼ିଆ ଭାଷାର ସ୍ୱତନ୍ତ୍ର ସତ୍ତା ବିପନ୍ନ ହୁଏ । ଏହାର ଚରମ ପରିଣତି ସ୍ୱରୂପ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଂକ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୁହେଁ' ୧୮୭୦ରେ ପ୍ରକାଶ ପାଏ । ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସଂପର୍କରେ ପ୍ରତିକୂଳ ମନ୍ତବ୍ୟ ଦେଇଛନ୍ତି ରବୀନ୍ଦ୍ରନାଥ । 'ଭାଷା ବିଚ୍ଛେଦ' ପ୍ରବନ୍ଧରେ ସେ କହିଛନ୍ତି ଯେ ଓଡ଼ିଆ ଓ ଆସାମୀ ଭାଷା ବଂଗଳାର ଦୁଇ ଉପଭାଷା । ଏଥିରୁ ସ୍ପଷ୍ଟ ଅନୁମେୟ ଓଡ଼ିଶାରେ ଥିବା କତିପୟ ବଂଗାଳୀ କର୍ମଚାରୀ ନୁହେଁ, ବଂଗଳାର ବୁଦ୍ଧିଜୀବୀ ମହଲରେ ମଧ୍ୟ ଓଡ଼ିଆ ଭାଷା ବଂଗଳାର ଏକ ଉପଭାଷା ରୂପେ ପରିଗଣିତ ହେଉଥିଲା, ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ବଜାୟ ରଖିବାକୁ ଯାଇ ଓଡ଼ିଆ ଭାଷାର ବ୍ୟାକରଣ ଓ କିଛି ଅଭିଧାନ ରଚିତ ହେଲା । ଓଡ଼ିଆ ଓ ବଂଗଳା ମଧ୍ୟରେ ଥିବା ଭାଷାଗତ ସାମ୍ୟ ଯେତେବେଳେ ଓଡ଼ିଆ ଭାଷାର ବିପଦର ମୁଖ୍ୟ କାରଣ ହୁଏ, ସେତେବେଳେ ସଟ୍‌ନଂକ ଓଡ଼ିଆ ଅଭିଧାନ, ବ୍ୟାକରଣ ତଥା ଦର୍ଶାଇଥିବା ଉଚ୍ଚାରଣଗତ ପାର୍ଥକ୍ୟ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପାଇଁ ଲଢ଼ିବାକୁ ପ୍ରେରଣା ଯୋଗାଇଥିବ । ଓଡ଼ିଆ ଓ ବଂଗଳାର ଭାଷାଗତ ସାଦୃଶ୍ୟ ପ୍ରାଥମିକ ସ୍ତରରେ ଅନେକଂକୁ ଭାଷାଚର୍ଚ୍ଚାପାଇଁ ପ୍ରବୃତ୍ତ କରାଇଥିଲା । ପରବର୍ତ୍ତୀ ସମୟରେ ଓଡ଼ିଆ ଭାଷାର ଉଚ୍ଛେଦୀକରଣ, ସରକାରୀ ସ୍ତରରେ, କୋର୍ଟକଚେରୀ ଓ ସ୍କୁଲରେ ବଂଗଳା ଭାଷା ପ୍ରଚଳନ ତଥା ଓଡ଼ିଆ ଭାଷାକୁ ବଂଗଭାଷାର ଉପଭାଷା ସାବ୍ୟସ୍ତ କରିବା ଭିତରେ ଭାଷାଚର୍ଚ୍ଚା ଏକ ନୂତନ ବୈଜ୍ଞାନିକ ଦୃଷ୍ଟିକୋଣ ଲାଭକଲା ; ଆଧୁନିକ ଭାରତୀୟ ଆର୍ଯ୍ୟଭାଷାଗୁଡ଼ିକର ତୁଳନାତ୍ମକ ଅଧ୍ୟୟନ ଏହି ଚର୍ଚ୍ଚାର ସୁଫଳ ।

ଏହି ସମୟରେ ଜନ୍ ବୀମସଂକ 'Out line of Indian philology', (୧୮୬୭) ଏବଂ A comparative Grammer of the Modern Aryan Languages of India (in 3 vol )୧୮୭୨-୭୯, Published -୧୯୬୬.

ପୁସ୍ତକ ଦୁଇଟିରେ ହୋଇଛି ନବୀନ ଭାରତୀୟ ଆର୍ଯ୍ୟଭାଷାଗୁଡ଼ିକର ତୁଳନାତ୍ମକ ତଥା ଐତିହାସିକ ଅଧ୍ୟୟନ । ସେ ହିନ୍ଦୀ, ପଞ୍ଜାବୀ, ସିନ୍ଧୀ, ଗୁଜୁରାଟୀ, ମରାଠୀ, ଓଡ଼ିଆ ଓ ବଂଗଳାର ଉତ୍ସ ବା ଜନନୀ ରୂପେ ସଂସ୍କୃତକୁ ଗ୍ରହଣ କରି ଦର୍ଶାଇଛନ୍ତି ଏହାର ଏକ ବିକାଶକ୍ରମ । ଏହି ପ୍ରସଂଗରେ ଓଡ଼ିଶାକୁ ଆର୍ଯ୍ୟ ଆଗମନର ସମୟ ଓ ପଥ ନିର୍ଦ୍ଧାରିତ । 'On the Relation of the Uriya to the other modern Aryan Languages' (1870), Asiatic Society ପ୍ରବନ୍ଧରେ ବୀମ୍‌ସ କେବଳ ଓଡ଼ିଆ ଭାଷା ଯେ ଏକ ସ୍ୱତନ୍ତ୍ର ଭାଷା, ତା ନୁହେଁ ବଂଗଳା ସହିତ ଏହାର ଯେତେ ସାମଞ୍ଜସ୍ୟ ଥାଉନା କାହିଁକି ଏହା ବଂଗଳା ଭାଷାଠାରୁ ପ୍ରାଚୀନ ତଥା ସଂସ୍କୃତ ଭାଷାର ଅଧିକ ନିକଟବର୍ତ୍ତୀ ବୋଲି ପ୍ରମାଣ କରିଛନ୍ତି । ଏହି ପ୍ରବନ୍ଧ ସହିତ ଭାଷାଗତ ବିବାଦର ଅବସାନ ଘଟିଥିଲା । ତେଣୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟକୁ ସ୍ୱୀକୃତି ଦେବା ମୂଳରେ ଏହି

ପ୍ରବନ୍ଧର ଏକ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅବିସ୍ମରଣୀୟ । ତୃତୀୟ ପର୍ଯ୍ୟାୟ (୧୮୭୦-୧୯୫୦) ଏ ପର୍ଯ୍ୟାୟରେ ତୁଳନାତ୍ମକ ଆଲୋଚନା ତଥା ଓଡ଼ିଆ ଭାଷାର ଐତିହାସିକ ଆଲୋଚନା ଦେଖାଦେଇଛି । ବିଶେଷଭାବେ ବିଦେଶୀ ଓ ଅଣଓଡ଼ିଆ ବ୍ୟକ୍ତିମାନେ ଏ ସମୟରେ ଭାଷାଚର୍ଚ୍ଚା କରିଛନ୍ତି । ଯେଉଁ କେତେଜଣ ଓଡ଼ିଆ ବ୍ୟକ୍ତି ଭାଷାଚର୍ଚ୍ଚା କରିଛନ୍ତି ସେମାନଂକ ଆଲୋଚନାରେ ପ୍ରତିଫଳିତ ହୋଇଛି ଗଭୀର ପାଣ୍ଡିତ୍ୟ, ନିଷ୍ଠା, ନୂତନତ୍ୱ, ଓ ମୌଳିକତା । A.D. Campbellଙ୍କ A Grammar of Teloogo, (1816) Caldwell ଙ୍କ A Comparative Grammar of the Dravidian or South Indian family of languages (1856) Ernest, Trump ଆଦି ତୁଳନାତ୍ମକ ଭାଷା ଅଧ୍ୟୟନର ପଥପ୍ରଦର୍ଶକ । ଇ.ସି.ବି. ହାଲେମଙ୍କର Oriya Grammar for English students (୧୮୭୪) ରେ ପ୍ରକାଶିତ । ଏଥିରେ ଓଡ଼ିଆ ଲିପି, କାରକ, ବିଭକ୍ତି, ସର୍ବନାମ, କ୍ରିୟା ଆଦିର ଆଲୋଚନା ହୋଇଛି, ଯଦିଚ ଏଥିରେ ଅନେକ ପ୍ରମାଦ ରହିଛି । କାଲ୍‌ଡ୍ ୱେଲ୍ ତାଂକ ଗ୍ରନ୍ଥରେ ଓଡ଼ିଆ ଭାଷାର ନାମୋଲ୍ଲେଖ କରିଛନ୍ତି , ମାତ୍ର ଓଡ଼ିଆ ଭାଷାର ଆଲୋଚନା ପ୍ରାୟ ହୋଇନି । ହୋର୍ଣ୍ଣେଲଙ୍କର A Grammar of Eastern Hindi Compared with the other Gaudian Languages, London (୧୮୮୦) ରେ ଭାରତୀୟ ଆର୍ଯ୍ୟଭାଷା ଆଲୋଚିତ । ତାଂକ ମତରେ ଆର୍ଯ୍ୟମାନଂକର ଭାରତ ଆଗମନ ଦୁଇଟି ପର୍ଯ୍ୟାୟରେ ଘଟିଛି । ଏହାକୁ ବହିରଂଗ ଓ ଅନ୍ତରଂଗ ଭାବେ ନାମିତ କରିଛନ୍ତି । ସେ ଓଡ଼ିଆ ଭାଷା ସହ ପୂର୍ବ ହିନ୍ଦୀର ଘନିଷ୍ଠ ସଂପର୍କ ବିଷୟରେ ଉଲ୍ଲେଖ କରିଛନ୍ତି; ମାତ୍ର ବ୍ୟାକରଣ ରଚନା କରିନାହାନ୍ତି । ରଂଗଲାଲ ବାନାର୍ଜୀଙ୍କ Journal of Asiatic society of Bengal ଓ Indian Antiquary (୧୮୮୦), ମନମୋହନ ଚକ୍ରବର୍ତ୍ତୀଂକ ବିଭିନ୍ନ ପ୍ରବଂଧମାଳା ତଥା Notes on the language and literature of Orissa, (୧୮୯୭-୯୮) ଓଡ଼ିଆ ଭାଷା ସାହିତ୍ୟକୁ ଏକ ବିରାଟ ଅବାଦନ । R.G. Bhandarkar ଙ୍କର Colleted Works of R.G. Bhandarkar, (୧୯୨୯) ରେ ଓଡ଼ିଆ ଭାଷା ଉପରେ ଆଲୋଚନା କରି ଏହା ଉପରେ ଦ୍ରାବିଡ଼ ଭାଷାର ପ୍ରଭାବକୁ ଅସ୍ୱୀକାର କରିଛନ୍ତି ।

ଗ୍ରୀଏରସନ୍ ୧୯୨୧ ମସିହାରେ ଓଡ଼ିଶା - ବିହାର ସରକାରଂକୁ ଓଡ଼ିଆରେ କୌଣସି ଅକ୍ଷର ତାଲିକା ନଥିବା କଥା ଜଣାଇ ଚିଠି ଦିଅନ୍ତି । ଏହାର ଫଳସ୍ୱରୂପ ପଣ୍ଡିତ କାଶୀନାଥ ଦାସ ଓ ମୃତ୍ୟୁଞ୍ଜୟ ରଥ ୧୯୨୪ ରେ ଏକ ତାଲିକା ପ୍ରସ୍ତୁତ କରିଥିଲେ । ଯାହା ସାର୍ ମାକ୍‌ଫର୍ସନଂକ ମୁଖବନ୍ଧ ସହିତ 'ଓଡ଼ିଆ ବର୍ଣ୍ଣମାଳା' (The Oriya Alphabet) ନାମରେ ପ୍ରକାଶିତ ହୋଇଥିଲା । ଆଧୁନିକ ଭାରତୀୟ ଭାଷା ଗବେଷଣା କ୍ଷେତ୍ରରେ ଗ୍ରୀଏରସନଂକ Linguistic survey of India ର ଅବଦାନ ଅବିସ୍ମରଣୀୟ । ଏହା ୨ଟି ଭାଗ ଓ ୧୧ଟି ଖଣ୍ଡରେ ରଚିତ । ପଞ୍ଚମ ଖଣ୍ଡ ଦ୍ୱିତୀୟ ଭାଗରେ ଓଡ଼ିଆ ଭାଷାର ଭାଷାତାତ୍ତ୍ୱିକ ଓ ଐତିହାସିକ ଅଧ୍ୟୟନ ହୋଇଛି । ଗ୍ରୀଏର୍‌ସନ୍‌ଂକ ମତରେ ଆର୍ଯ୍ୟମାନେ ଦୁଇ ନୁହେଁ ତିନି ଦଳରେ ଭାରତରେ ପ୍ରବେଶ କରିଥିଲେ ।

ସେ ଏହାକୁ ବହିରଂଗ, ଅନ୍ତରଂଗ ଓ ମଧ୍ୟବର୍ଗ ଏପରି ତିନି ଶାଖାରେ ବିଭକ୍ତ କରିଛନ୍ତି । ତାଂକ ମତରେ ପୂର୍ବଭାରତୀୟ ଭାଷାମାନଂକ ମଧ୍ୟରେ ଓଡ଼ିଆ ସବୁଠାରୁ ପ୍ରାଚୀନ ଓ ଏକ ସମୃଦ୍ଧିଶାଳୀ ଭାଷା । ସେ ଓଡ଼ିଆ ଭାଷାଚର୍ଚ୍ଚା ସଂପର୍କରେ ଏକ ଉପାଦାନ ସୂଚୀ (Bibliography) ମଧ୍ୟ ଦେଇଛନ୍ତି । ଏହା ବ୍ୟତୀତ ଓଡ଼ିଶା ବାହାରେ ଥିବା ଓଡ଼ିଆ ଭାଷାଭାଷୀ ଅଂଚଳର ଏକ ମାନଚିତ୍ର ମଧ୍ୟ ପ୍ରଦତ୍ତ, ଯାହା ସେ ସମୟରେ କୌଣସି ଓଡ଼ିଆ ମଧ୍ୟ କରିନାହାନ୍ତି । ଷଢ଼େଇକଳା ଖରସୁଆଁ ତଥା ଧଳଭୂମି ବ୍ୟତୀତ ସିଂହଭୂମର ସମସ୍ତ ଅଂଚଳକୁ ଓଡ଼ିଆ ଭାଷୀ ଅଂଚଳଭାବେ ଚିହ୍ନିତ କରିଛନ୍ତି । ଗ୍ରୀଏରସନ୍ କାରକ ସଂପର୍କରେ ଭୁଲ ମତ ଦେଇଛନ୍ତି । ଆଠଟି କାରକ ଦର୍ଶାଇବା ସହିତ ଓଡ଼ିଆ ଭାଷାରେ 'ଣି' ଏକ ପାଦପୂରଣାର୍ଥକ ପ୍ରତ୍ୟୟ ବୋଲି ଦର୍ଶାଇଛନ୍ତି । ଏତଦ୍ ବ୍ୟତୀତ ସର୍ବନାମ ପଦର ତାର୍ଯକରୂପ ସଂପର୍କରେ ମଧ୍ୟ କିଛି ଭୁଲ୍ ତଥ୍ୟ ନିର୍ଦ୍ଦେଶ କରିଛନ୍ତି । ଲିଂଗ ତଥା ବାକ୍ୟତତ୍ତ୍ୱ ସଂପର୍କରେ ବିଶେଷ ଆଲୋଚନା ହୋଇନାହିଁ । ଓଡ଼ିଆ ଭାଷାରେ ଔପଭାଷିକ ରୂପଭେଦ ନାହିଁ ବୋଲି ଏକ ଭୁଲ୍ ମତ ମଧ୍ୟ ପ୍ରଦତ୍ତ । ତେବେ ଉଡ୍ରୀ ଭାଷାକୁ ଓଡ଼ିଆର ଏକମାତ୍ର ଉପଭାଷା ରୂପେ ଗ୍ରହଣ କରିଛନ୍ତି, ଯଦିଓ ପରବର୍ତ୍ତୀ ସମୟରେ ଏହା ଭୁଲ୍ ବୋଲି ପ୍ରମାଣିତ । କୁରୁମାଳୀ ଓ ସଉରା ଭାଷାକୁ ଆଂଚଳିକ ଭାଷା ଭାବେ ଗ୍ରହଣ କରିଛନ୍ତି । ନାନା ତ୍ରୁଟି ଓ ପ୍ରମାଦ ଥିବା ସତ୍ତ୍ୱେ Linguistic survey of India, (Part I & II, vol 1 to 2) (୧୯୦୩-୧୯୨୭) ର ଅବଦାନ ଅନସ୍ୱୀକାର୍ଯ୍ୟ ।

କଲିକତା ବିଶ୍ୱବିଦ୍ୟାଳୟର ମୁଖ୍ୟ ବିଜୟ ଚନ୍ଦ୍ର ମଜୁମଦାର ୧୯୨୧ ରେ Typical selections from Oriya Literature ଗ୍ରନ୍ଥର ମୁଖବନ୍ଧରେ ତଥା ବଂଗଳା ଭାଷାର ଇତିହାସ (୧୯୨୭) ଗ୍ରନ୍ଥରେ ଓଡ଼ିଆ ଭାଷାର ଉତ୍ପତ୍ତି, କ୍ରମ ବିକାଶ ସଂପର୍କରେ ଲେଖିବା ସହିତ ଦଶମ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ଯେ ସ୍ୱତନ୍ତ୍ର ରୂପ ଲାଭ କରିଛି ଏହି ମତ ପ୍ରଦାନ କରିଛନ୍ତି । ବିଖ୍ୟାତ ଭାଷାତତ୍ତ୍ୱବିଦ୍ ଅଧ୍ୟାପକ ସୁନୀତି କୁମାର ଚାଟାର୍ଜୀ Origin and Development of Bengali language, Calcutta University Press, (୧୯୨୬) ଗ୍ରନ୍ଥରେ ବଂଗଳା ଭାଷା ସହିତ ସାମ୍ୟ ଥିବା ହେତୁ ଓଡ଼ିଆ ଭାଷାର ଆଲୋଚନା କରିଛନ୍ତି । ଓଡ଼ିଆ ଭାଷା ସଂପର୍କରେ ତାଂକ ମତ ନିରପେକ୍ଷ ନୁହେଁ, ଦ୍ୱେଷପୂର୍ଣ୍ଣ । ତେବେ ଓଡ଼ିଆ ଭାଷାର ବିସ୍ତୃତ ଆଲୋଚନା କରିବା ସହିତ ଏହା ଏକ ରକ୍ଷଣଶୀଳ ଭାଷା ବୋଲି ମତ ଦେଇଛନ୍ତି ।

ଏହି ସମୟରେ ଗୋପୀନାଥ ନନ୍ଦଶର୍ମାଙ୍କ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' (୧୯୨୬) ଓ 'ଓଡ଼ିଆ ଭାଷାତତ୍ତ୍ୱ' (୧୯୨୭) ଭାଷାତତ୍ତ୍ୱ ଦୃଷ୍ଟିରୁ ଗବେଷଣାମୂଳକ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଏହା ପୂର୍ବରୁ ରଚିତ ଅଭିଧାନଗୁଡ଼ିକ ମଧ୍ୟରୁ ଅଧିକାଂଶ ଅଣଓଡ଼ିଆଂକ ଦ୍ୱାରା ରଚିତ ଏବଂ ଏହାକୁ ପୂର୍ଣ୍ଣାଂଗ ଓ ଆଦର୍ଶ ଅଭିଧାନ କୁହାଯାଇପାରିବ । ଏହି ଅଭିଧାନଗୁଡ଼ିକରେ ଥିବା ଅଭାବ 'ଶବ୍ଦତତ୍ତ୍ୱ ବୋଧ ଅଭିଧାନ' ଦ୍ୱାରା ପୂର୍ଣ୍ଣ ହୋଇଛି । ଏଥିରେ ଶବ୍ଦଗୁଡ଼ିକର ବ୍ୟୁତ୍ପତ୍ତିଗତ ବିଭାଗୀକରଣ, ଶବ୍ଦର ଇତିହାସ ଓ ଅର୍ଥ, ଅର୍ଥର ବିଶ୍ଳେଷଣ ପାଇଁ ସାହିତ୍ୟରୁ ନାନା ଉଦ୍ଧୃତି ପ୍ରଦତ୍ତ । 'ଓଡ଼ିଆ

ଭାଷାତତ୍ତ୍ୱ'ରେ ଓଡ଼ିଆ ବ୍ୟାକରଣର ବିଭିନ୍ନ ଦିଗର ବିସ୍ତୃତ ଓ ବ୍ୟାପକ ଆଲୋଚନା କରାଯାଇଛି ସଂସ୍କୃତ ଓ ପ୍ରାକୃତ ଭାଷା ଓଡ଼ିଆ ଭାଷାର ଜନନୀ ଭାଷା । ପ୍ରାକୃତ ଭାଷା ସହିତ ଓଡ଼ିଆ ଭାଷାର ସଂପର୍କ ଅଧିକ ଘନିଷ୍ଠ । ଓଡ଼ିଆ ଭାଷାର ଶବ୍ଦ, ପ୍ରତ୍ୟୟ ଆଦିର ପ୍ରାକୃତ ଓ ସଂସ୍କୃତଠାରୁ ସ୍ୱାତନ୍ତ୍ର୍ୟ ନିର୍ଦ୍ଦେଶିତ । ଧ୍ୱନିତତ୍ତ୍ୱରେ ସ୍ୱର ବ୍ୟଞ୍ଜନଧ୍ୱନି, ଧ୍ୱନି ପରିବର୍ତ୍ତନ, ବ୍ୟାକରଣ ଦୃଷ୍ଟିରୁ ଲିଙ୍ଗ, ବଚନ, କାରକ, ବିଭକ୍ତି, ବିଶେଷଣ, ସର୍ବନାମ, ଅବ୍ୟୟ, କ୍ରିୟା, କୃଦନ୍ତ ପଦ, ତଦ୍ଧିତ ପଦ ଆଦି ବିଶଦ ଭାବେ ଆଲୋଚିତ । ଓଡ଼ିଆ ଭାଷାର ପ୍ରଥମ ବ୍ୟୁତ୍ପତ୍ତିମୂଳକ (Etymological) ଅଭିଧାନ ଓ ଓଡ଼ିଆ ଭାଷାର ବୃହତ୍ ବ୍ୟାକରଣ ଗ୍ରନ୍ଥ ରଚନା କରିଛନ୍ତି । ଯେଉଁଥିରେ ଧ୍ୱନି, ଶବ୍ଦ, ରୂପ,ବାକ୍ୟ ଅର୍ଥ ବିଶ୍ଳେଷଣ କରିବା ସହିତ ବ୍ୟୁତ୍ପତ୍ତି ବିଜ୍ଞାନ, ତୁଳନାତ୍ମକ, ଐତିହାସିକ ତଥା ସଂରଚନାତ୍ମକ ଓ ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର ପଥ ଅନୁସରଣ କରିଛନ୍ତି ।

ଆଧୁନିକ ଭାଷାବିଜ୍ଞାନ ଦୃଷ୍ଟିରୁ ଏହା ଉଲ୍ଲେଖଯୋଗ୍ୟ ହୋଇ ନପାରେ, ମାତ୍ର ଓଡ଼ିଆ ଭାଷାର ଇତିହାସ, ପ୍ରାଚୀନ ସାହିତ୍ୟର ଶୁଦ୍ଧ ସଂସ୍କରଣ, ଅଭିଧାନ ତଥା ଭାଷାର ବ୍ୟାକରଣିକ ବୈଶିଷ୍ଟ୍ୟ ନିର୍ଦ୍ଧାରଣ ଦିଗରେ ଶ୍ୟାମସୁନ୍ଦର ରାଜଗୁରୁ, ଗୋପାଳ ଚନ୍ଦ୍ର ପ୍ରହରାଜ, ମୃତ୍ୟୁଞ୍ଜୟ ରଥ, ଜଗବନ୍ଧୁ ସିଂହ, ଆର୍ତ୍ତବଲ୍ଲଭ ମହାନ୍ତିଂକ ଭୂମିକା ଉଲ୍ଲେଖନୀୟ । ପଣ୍ଡିତ ବିନାୟକ ମିଶ୍ରଙ୍କ 'ଓଡ଼ିଆ ଭାଷାର ଇତିହାସ' (୧୯୨୭) ପରବର୍ତ୍ତୀ ସମୟରେ 'ଓଡ଼ିଆ ଭାଷାର ପୁରାତତ୍ତ୍ୱ' (୧୯୬୫) ଭାଷାଚର୍ଚ୍ଚା ପାଇଁ କେତେକ ସମସ୍ୟା ଓ ଦିଗ ଉନ୍ମୁକ୍ତ କରିଛି । ଓଡ଼ିଶାରେ ଆର୍ଯ୍ୟବସତି, ଓଡ଼ିଆ ଭାଷାର ଉନ୍ମେଷ ଓ ପ୍ରତିଷ୍ଠାର ସମୟ ନିର୍ଦ୍ଧାରଣ କରିଛନ୍ତି । ମୁଖ୍ୟତଃ ତାଂକର ଆଲୋଚନା ଦ୍ରାବିଡ଼ ଅଭିମୁଖୀ ।

ପଣ୍ଡିତ ନୀଳକଂଠ ଦାସ ୧୯୨୭ ରେ ଗୋପୀନାଥ ନାନ୍ଦଶର୍ମାଂକ 'ଓଡ଼ିଆ ଭାଷାତତ୍ତ୍ୱ'ର ମୁଖବନ୍ଧରେ 'ଭାଷାତତ୍ତ୍ୱ ପ୍ରବେଶ'ରେ ଭାଷା ଉପରେ ଆଲୋକପାତ କରିଛନ୍ତି । ଏହାପରେ ନାନା ପ୍ରବନ୍ଧ, ଓଡ଼ିଆ ବ୍ୟାକରଣ (୧୯୩୫), ସଂସ୍କୃତ ଓ ସଂସ୍କୃତି (୧୯୫୧) ଓଡ଼ିଆ ସାହିତ୍ୟର କ୍ରମ ପରିଣାମ (୧୯୪୮ ଓ ୧୯୫୩) ରେ ପୃଥିବୀର ବିଭିନ୍ନ ଭାଷାର ଲିପି, ବ୍ରାହ୍ମୀଲିପି ତଥା ଆଧୁନିକ ଭାରତୀୟ ଆର୍ଯ୍ୟଭାଷାର ଲିପିର ବିବର୍ତ୍ତନ, ଓଡ଼ିଆ ଧ୍ୱନି ସହ ପାଲି ଓ ପ୍ରାକୃତ ଧ୍ୱନିର ତୁଳନାତ୍ମକ ଆଲୋଚନା କରି କେତେକ ଅନାବଶ୍ୟକ ଓ ଅନୁଚ୍ଚାରିତ ଧ୍ୱନି ତଥା ଲିପିର ସଂଶୋଧନ ହେବା ଉଚିତ ବୋଲି ମତ ଦେଇଛନ୍ତି । ଓଡ଼ିଆ ଭାଷାର ଧ୍ୱନିତାତ୍ତ୍ୱିକ ଓ ତୁଳନାତ୍ମକ ଅଧ୍ୟୟନ ତଥା ବିଭିନ୍ନ ଶବ୍ଦର ବ୍ୟୁତ୍ପତ୍ତି ତତ୍ତ୍ୱ ଅନୁସାରେ ଏହାର ଉତ୍ସ ସନ୍ଧାନ କରିଛନ୍ତି । ପାରଂପରିକ ବ୍ୟାକରଣ ଓ ଭାଷାତତ୍ତ୍ୱର ଆଦର୍ଶରେ ଆଲୋଚନା କରିଥିଲେହେଁ ଏଥିରେ ତାଂକର ପାଣ୍ଡିତ୍ୟ, ଗଭୀର ଅଧ୍ୟୟନ, ନିଷ୍ଠା ତଥା ମୌଳିକତାର ପରିଚୟ ମିଳେ ।

### ଚତୁର୍ଥ ପର୍ଯ୍ୟାୟ (୧୯୫୦-)

୧୯୫୦କୁ ଓଡ଼ିଆ ଭାଷାର ଉତ୍ପତ୍ତି, ବିକାଶକ୍ରମେ, ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାସହ ଓଡ଼ିଆ ଭାଷାର ସଂପର୍କ, ଓଡ଼ିଶାକୁ ଆର୍ଯ୍ୟ ଆଗମନର ପଥ ଓ ସମୟ ଆଦି ନିର୍ଣ୍ଣୀତ ଓ

ପ୍ରତିଷ୍ଠିତ । ଏହି ସମୟରେ ବିଦେଶରେ ଭାଷା ବିଜ୍ଞାନ ଉପରେ ଗବେଷଣା କରି ଆଧୁନିକ ଭାଷା-ବିଜ୍ଞାନ ତତ୍ତ୍ୱ ତଥା ପ୍ରାୟୋଗିକ ଜ୍ଞାନ ଆହରଣ କରି ଅନେକ ଭାଷାଚର୍ଚ୍ଚା ହୋଇଛି । ଏତଦ୍ ବ୍ୟତୀତ ଓଡ଼ିଆ ଭାଷାର ନାନା ଦିଗ ଓ ଦିଗନ୍ତକୁ ସ୍ପର୍ଶକରି ବିଭିନ୍ନ ଆଲୋଚନା, ଭାଷାବିଜ୍ଞାନଗତ ଦାରିଦ୍ର୍ୟ ଦୂର କରିବାରେ ସମର୍ଥ ହୋଇଛି ।

ଅଧ୍ୟାପକ କରୁଣାକର କର 'ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ' (୧୯୫୧) ରେ ପ୍ରମାଣ କରିଛନ୍ତି ଯେ ଏହାର ଭାଷା ପ୍ରାଚୀନ ଓଡ଼ିଆ ଭାଷା, ୧୯୬୫ରେ ଚର୍ଯାଗୀତିକାରେ ଖଗେଶ୍ୱର ମହାପାତ୍ର ଏହାର ଭାଷାକୁ ପ୍ରତ୍ନ ଓଡ଼ିଆ ରୂପ ବୋଲି ଦର୍ଶାଇଛନ୍ତି । ଡ଼: କୁଞ୍ଜବିହାରୀ ତ୍ରିପାଠୀଙ୍କର ଲଣ୍ଡନ ବିଶ୍ୱବିଦ୍ୟାଳୟ ଥିସିସ୍ "The Evolution of Oriya language and script" (୧୯୫୬)ରେ ଓଡ଼ିଆ ଅଭିଲେଖ ଓ ତାମ୍ରପଟା ଗୁଡ଼ିକର ଭାଷା ବୈଜ୍ଞାନିକ ତଥା ଐତିହାସିକ ଆଲୋଚନା କରାଯାଇଛି । ବ୍ୟୁଲର୍ଙ୍କ ମତରେ Proto Bengali ଲିପିରୁ ପରବର୍ତ୍ତୀ କାଳରେ ଓଡ଼ିଆ ଲିପି ବିକଶିତ । ଏହି ମତ ଭାଷାବିତ୍‌ଗଣ ସ୍ୱୀକାର କରିନେଇଥିବା ସମୟରେ ଡଃ: ତ୍ରିପାଠୀ ପ୍ରମାଣ କରିଛନ୍ତି ଯେ ବଂଗଳା ଲିପି ବିକଶିତ ହେବାର ବହୁପୂର୍ବରୁ ଓଡ଼ିଆ ଲିପି ବିକଶିତ । ତାଂକର 'ଓଡ଼ିଆ ଭାଷାତତ୍ତ୍ୱ ଓ ଲିପିର ବିକାଶ' ୧୯୭୭ ରେ ପ୍ରକାଶିତ । ଏଥିରେ ଓଡ଼ିଆ ବ୍ୟାକରଣର ବିଭିନ୍ନ ବିଭାଗର ଆଲୋଚନା ସହିତ ବିଶିଷ୍ଟ କବିମାନଙ୍କର ଭାଷାର ଭାଷାତାତ୍ତ୍ୱିକ ବୈଶିଷ୍ଟ୍ୟ ଆଲୋଚିତ ।

ଗୋଲକ ବିହାରୀ ଧଳଂକ ଲଣ୍ଡନ ବିଶ୍ୱବିଦ୍ୟାଳୟର ଥିସିସ୍ Aspiration in Oriya ୧୯୫୨ରେ 'ହ' ଧ୍ୱନିର ବିଶ୍ଳେଷଣ କରାଯାଇଛି । ପରବର୍ତ୍ତୀ ସମୟରେ ସେ 'ମଣିଷର ଭାଷା' (୧୯୫୩)ରେ ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର ସରଳ ଓ ସୁବୋଧ୍ୟ ପରିଚୟ, ଅର୍ଥତତ୍ତ୍ୱ, ଧ୍ୱନିତତ୍ତ୍ୱ, ଓଡ଼ିଆ ବ୍ୟାକରଣ ଆଦି ଆଲୋଚିତ । 'ଓଡ଼ିଆ କେବେ' (୧୯୬୩) ରେ ଓଡ଼ିଆ ଭାଷା ସରକାରୀ ଭାଷା ହେବାରେ କି ସମସ୍ୟା ଓ ପ୍ରୟୋଜନ 'ଇଂରାଜୀ ଉଚ୍ଚାରଣ ଶିକ୍ଷା' (୧୯୬୪) ରେ ଇଂରାଜୀ ଭାଷା ଉଚ୍ଚାରଣର ଠିକ୍ ନିର୍ଦ୍ଦେଶ, 'ଧ୍ୱନିବିଜ୍ଞାନ' (୧୯୭୪)ରେ ଧ୍ୱନିଗୁଡ଼ିକର ବୈଜ୍ଞାନିକ ବିଶ୍ଳେଷଣ ଓ 'ଭାଷାଶାସ୍ତ୍ର ପରିଚୟ' (୧୯୭୬) ରେ ଧ୍ୱନି, ଅର୍ଥ, ଭାଷା ପରିବର୍ତ୍ତନ ତଥା ଭାଷା ପରିବାର, ଭାଷା ପ୍ରଭାବ, ଲିପି, ଭାଷା ଓ ଉପଭାଷା ଆଦି ଆଲୋଚିତ । The verb piece in Oriya (୧୯୬୧) ରେ ଓଡ଼ିଆ କ୍ରିୟାପଦର ପ୍ରଥମ ବୈଜ୍ଞାନିକ ବିଶ୍ଳେଷଣ ବିଜୟ ପ୍ରସାଦ ମହାପାତ୍ର କରିଛନ୍ତି । ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ (୧୯୮୭) ଓ ଓଡ଼ିଆ ଭାଷା ବିଭବ (୧୯୯୫) ଆଦିରେ ଓଡ଼ିଆ ଭାଷାର ଅକ୍ଷର, ଲିପି, କ୍ରିୟାପଦ, ଓଡ଼ିଆ ଉପଭାଷା ଆଦିର ବୈଜ୍ଞାନିକ ଆଲୋଚନା ରହିଛି ।

ଅଧ୍ୟାପକ ଦେବୀପ୍ରସନ୍ନ ପଟ୍ଟନାୟକ A Controlled Historical Construction of Oriya, Assamese, Bengali and Hindi (୧୯୬୨) ରେ ଓଡ଼ିଆ ଧ୍ୱନିର

ବର୍ଣ୍ଣନାତ୍ମକ ବିବରଣୀ ଦେଇଛନ୍ତି । ଏହି ଚାରୋଟି ଭାଷାର ଧ୍ୱନି ବ୍ୟବସ୍ଥାର ତୁଳନାତ୍ମକ ପୁନର୍ଗଠନରୁ ଓଡ଼ିଆ ଭାଷାର ପ୍ରାଚୀନତା, ବଂଗଳା ଓ ଅସମୀୟା ଭାଷାର ଅଧିକ ଘନିଷ୍ଠତା ପ୍ରମାଣ କରିଛନ୍ତି । ଓଡ଼ିଆ ଭାଷା ଓ ଭାଷା ବିଜ୍ଞାନ (୧୯୮୫)ରେ ଓଡ଼ିଆ ଭାଷା ଚର୍ଚ୍ଚାର ଇତିହାସ, ଓଡ଼ିଆ ଉଚ୍ଚାରଣ, ବ୍ୟାକରଣ, ରଚନା, ଶିକ୍ଷା ଆଦିର ବୈଜ୍ଞାନିକ ଆଲୋଚନା ହୋଇଛି । Conversational Oriya (୧୯୭୨) ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ଗଗନେନ୍ଦ୍ର ଦାଶଙ୍କର ମିଳିତ ପ୍ରୟାସରେ ରଚିତ । ଖଗେଶ୍ୱର ମହାପାତ୍ରଙ୍କ 'ଦକ୍ଷିଣାଞ୍ଚଳୀୟ ଓଡ଼ିଆ' (୧୯୭୬) ଦେଶିଆ ଉପଭାଷାର ଏକ ଅଧ୍ୟୟନ । ସେ ପ୍ରଥମକରି ଓଡ଼ିଆ ଭାଷାର ଉପଭାଷା ଅଧ୍ୟୟନ ଉପରେ ଗୁରୁତ୍ୱ ଦେଇଛନ୍ତି । ତାଂକର 'ଓଡ଼ିଆ ଲିପି ଓ ଭାଷା' (୧୯୭୭) ରେ ଓଡ଼ିଆ ଭାଷାର ଉତ୍ପତ୍ତି, ଓଡ଼ିଆ ଭାଷା ଇତିହାସର ଆଲୋଚନା, ଓଡ଼ିଆ ପଦର ବ୍ୟାକରଣିକ ଆଲୋଚନା, ଓଡ଼ିଆ ଉପଭାଷା ତଥା 'ପ୍ରତ୍ନ ଓଡ଼ିଆ' (୧୯୭୯) ରେ ଚର୍ଯାଗୀତିକା ଅବଲମ୍ବନରେ ଓଡ଼ିଆ ଭାଷାର ପ୍ରତ୍ନରୂପ ଆଲୋଚିତ । ତାଂକ ରଚନାରେ ବୈଜ୍ଞାନିକ ଦୃଷ୍ଟିକୋଣ ଓ ମୌଳିକତା ପ୍ରତିଫଳିତ ।

ପ୍ରହ୍ଲାଦ ପ୍ରଧାନ, କୁଞ୍ଜବିହାରୀ ତ୍ରିପାଠୀ, କେ.ଏମ. ମହାନ୍ତିଙ୍କ ମିଳିତ ପ୍ରୟାସରେ Linguistic Glossary (Eng-Oriya) ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା ଦ୍ୱାରା ପ୍ରଣୀତ । ଏହି ପର୍ଯ୍ୟାୟରେ ଶ୍ରୀ ବି.ଏନ୍ ପଟ୍ଟନାୟକଙ୍କର ଓଡ଼ିଆ ବାକ୍ୟ ବିନ୍ୟାସ ଉପରେ ନିବଂଧ, ଶ୍ରୀ ଏମ୍. କେ ଦାସଙ୍କର ଓଡ଼ିଆ ଶିକ୍ଷା ସମ୍ବନ୍ଧୀୟ ନିବଂଧ-ଭାଷା ତାତ୍ତ୍ୱିକ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ । ଶ୍ରୀମତୀ ହରିପ୍ରିୟା ମିଶ୍ରଙ୍କର Historical Oriya Morphology (୧୯୭୫) ଗଗନେନ୍ଦ୍ର ଦାଶଙ୍କର Descriptive Morphology of Oriya (୧୯୮୨) ଓଡ଼ିଆ ରୂପତତ୍ତ୍ୱ ସଂପର୍କରେ ଉନ୍ନତ ମାନର ଗବେଷଣାମୂଳକ ପୁସ୍ତକ । ଓଡ଼ିଆ ଭାଷାଚର୍ଚ୍ଚାର ପରଂପରା (୧୯୮୩)ରେ ୧୯୦୦ ପର୍ଯ୍ୟନ୍ତ ଓଡ଼ିଆ ଭାଷା ସଂପର୍କରେ ହୋଇଥିବା ସମସ୍ତ ଆଲୋଚନା, ଅଭିଧାନ ଓ ବ୍ୟାକରଣର ଏକ ନିର୍ଭରଯୋଗ୍ୟ ମୌଳିକ ଗବେଷଣା ତଥା ଓଡ଼ିଆ ଭାଷା ସୁରକ୍ଷା ଅନ୍ଦୋଳନ (୧୯୯୩) ଭାଷା ବିଲୋପ ଓ ସୁରକ୍ଷା ସଂପର୍କରେ ଗବେଷଣାମୂଳକ ଗ୍ରନ୍ଥ ।

ଆର୍ ଏଲ୍ ଟର୍ଣ୍ଣର ତାଂକ Comparative Dictionary of Aryan Languages (୧୯୬୬)ରେ ସିଂହଳ ଭାଷା ସହିତ ଓଡ଼ିଆ ଭାଷାର ଆନ୍ତରିକ ସମ୍ବନ୍ଧ, ପରେଶ ଚନ୍ଦ୍ର ମଜୁମଦାରଂକ "A Historical phonology of Orissa" (୧୯୭୦) ରେ ଓଡ଼ିଆ ଧ୍ୱନିଗ୍ରାମର ବିଶ୍ଳେଷଣ କରିଛନ୍ତି । ଅପନ୍ନା ପ୍ରଧାନଙ୍କର A comparative Study of verb roots and vocables of Hindi and Oriya (୧୯୭୪) ନିବଂଧ, 'ଆଧୁନିକ ଭାଷା ବିଜ୍ଞାନ ପ୍ରବେଶ' (୧୯୭୯) ଭାଷା ବିଜ୍ଞାନ ସଂପର୍କିତ ପ୍ରାଥମିକ ପରିଚୟ ପୁସ୍ତକ । ଡ଼: ଚୌଧୁରୀ ହେମକାନ୍ତ ମିଶ୍ରଙ୍କର 'ଭାଷା ପରୀକ୍ଷଣ' (୧୯୭୬) ରେ ଭାଷାବିଜ୍ଞାନର ଏକ ନୂତନ ଦିଗ ଆଲୋଚିତ ।

ଓଡ଼ିଆ ଭାଷାରେ ଆଗ୍ରହୀ ହୋଇ ଏ କେତେଜଣ ବିଦେଶୀ ପଣ୍ଡିତ ଓଡ଼ିଆ ଭାଷା

ସଂପର୍କରେ ପୁସ୍ତକ ରଚନା କରିଛନ୍ତି । ସେମାନଂକ ମଧ୍ୟରୁ ଏ. ଆଣ୍ଡରସନ୍‌ଂକ A Grammar of the Oriya Language (୧୯୫୯), ଡ଼ନ ମାଟସନଙ୍କର ୧୯୬୪ରେ ସାତଖଣ୍ଡରେ ଓଡ଼ିଆ ପାଠ୍ୟପୁସ୍ତକ ପ୍ରକାଶିତ । ଓଡ଼ିଆ ଭାଷା ଉପରେ 'ଯାନ୍ତ୍ରିକ ଓଡ଼ିଆ' ନାମରେ (୧୯୬୪)ରେ ବି.ଏମ୍ କରପୁସ୍କିନ ଏକ ପୁସ୍ତକ ଓ ଶ୍ରୀମତୀ ବ୍ୟୁକୋଭା ଓ ଏଲିଜାରେକୋଭା ତାଂକ ଭାରତୀୟ ଭାଷାମାନଂକ ତୁଳନାତ୍ମକ ଅଧ୍ୟୟନରେ ଓଡ଼ିଆ ଭାଷା ସଂପର୍କରେ ଆଲୋଚନା କରିଛନ୍ତି । ସେହିପରି ଏ.ଆର. କେଲକରଂକ ତତ୍ତ୍ୱାବଧାନ (୧୯୬୬)ରେ ଓଡ଼ିଆର ଧ୍ୱନିଗ୍ରାମିକ ଓ ରୂପଗ୍ରାମିକ ଅଧ୍ୟୟନ ହୋଇଥିଲା ।

୧୯୫୦ ପରବର୍ତ୍ତୀ ସମୟରେ ଉକ୍ତ ଅଲୋଚନା ଗୁଡ଼ିକରେ ବୈଜ୍ଞାନିକ ଦୃଷ୍ଟିକୋଣ ମୌଳିକତା ଓ ନୂତନତ୍ୱ ପ୍ରତିଫଳିତ । ଏହି ସମୟରେ ଆଉରି ଅନେକ ଭାଷାବିଜ୍ଞାନ ସଂପର୍କିତ ପୁସ୍ତକ ରଚିତ ହୋଇଛି, ଯେଉଁଥିରେ ବିଶେଷ ଭାବରେ ଧ୍ୱନି,ଶବ୍ଦ, ରୂପ, ଅର୍ଥ, ବାକ୍ୟ, ଲିପି, ଓଡ଼ିଆ ଭାଷାରେ ନାନା ବିଦେଶୀ ଭାଷାର ପ୍ରଭାବ, ଦ୍ରାବିଡ଼ ଓ ଆଦିବାସୀ ଭାଷାର ପ୍ରଭାବ, ଉପଭାଷା ଆଦି ବିଶଦଭାବେ ଆଲୋଚିତ । ଏହା ଓଡ଼ିଆ ଭାଷାରେ ଭାଷାବିଜ୍ଞାନଗତ ଦାରିଦ୍ର୍ୟ ଦୂର କରିବା ସହିତ ବିଶ୍ୱବିଦ୍ୟାଳୟରେ ପାଠ୍ୟପୁସ୍ତକର ଆବଶ୍ୟକତା ପୂର୍ଣ୍ଣ କରିଛି । ତେଣୁ ଏ ପୁସ୍ତକଗୁଡ଼ିକର ଅବଦାନ ଅନସ୍ୱୀକାର୍ଯ୍ୟ ।

ଶ୍ରୀ ଶତ୍ରୁଘ୍ନନାଥଙ୍କର 'ଆମ ଭାଷା ବିଭବ' (୧୯୫୯) ରେ ଶବ୍ଦର ଆଳଙ୍କାରିକ ପ୍ରୟୋଗ ବିଶେଷ୍ୟ କ୍ରିୟା ରୂପେ, ବିଶେଷଣ, ସମପର୍ଯ୍ୟାୟବାଚୀ ଶବ୍ଦ ବ୍ୟବହାର ତଥା ଯୁଗ୍ମଶବ୍ଦ ଆଦିର ଶୈଳୀତାତ୍ତ୍ୱିକ ପ୍ରୟୋଗ ଆଲୋଚିତ । 'ସରଳ ଭାଷାତତ୍ତ୍ୱ'(୧୯୬୭, ୨ୟ ସଂସ୍କରଣ)ରେ ଗିରିଜା ଶଂକର ରାୟ ଧ୍ୱନି, ଶବ୍ଦର ଉତ୍ପତ୍ତି ଓ ଇତିହାସ, ଶବ୍ଦର ଶ୍ରେଣୀବିଭାଗ ଓ ଆଳଂକାରିକ ପରିବର୍ତ୍ତନ ଆଲୋଚନା କରିଛନ୍ତି । ଓଡ଼ିଆ ଭାଷା ବିଜ୍ଞାନ (୧୯୬୮)ରେ ବ୍ରଜମୋହନ ମହାନ୍ତି ଭାଷା ତଥା ଓଡ଼ିଆ ଭାଷାର ଉତ୍ପତ୍ତି, ଭାଷା-ପରିବାର, ଓଡ଼ିଆ ଧ୍ୱନିତତ୍ତ୍ୱ, ଶବ୍ଦତତ୍ତ୍ୱ, ଓଡ଼ିଆ ପ୍ରତ୍ୟୟ, ବିଶେଷଣ, ସର୍ବନାମ, ଲିଂଗ, ବିଭକ୍ତି, ଅବ୍ୟୟ, କ୍ରିୟା, ସନ୍ଧି, ସମାସ, ତଥା ପାଲି ପ୍ରାକୃତ ଓ ବ୍ରଜବୋଲି ଭାଷାର ସ୍ୱରୂପ ସହିତ ବିଶିଷ୍ଟ ବୈୟାକରଣ ମାନଙ୍କର ଆଲୋଚନା କରିଛନ୍ତି ।

ବଂଶୀଧର ମହାନ୍ତିଙ୍କର 'ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମ ବିକାଶ' (୧୯୭୦) 'ଓଡ଼ିଆ ଭାଷାତତ୍ତ୍ୱର ଭୂମିକା' (୧୯୮୧,୨ୟ ସଂସ୍କରଣ) 'ଓଡ଼ିଆ ଭାଷା ଅନ୍ଦୋଳନ' (୧୯୮୯) ଆଦିରେ ଭାଷା ପରିବାର, ଓଡ଼ିଆ ଭାଷାରେ ଅନ୍ୟ ଭାଷାର ପ୍ରଭାବ, ପ୍ରାଚୀନ ଓଡ଼ିଆ ଭାଷାର ରୂପ, ଚର୍ଯ୍ୟାଗୀତିକା ଓ ସାରଳା ମହାଭାରତରେ ଓଡ଼ିଆ ଭାଷାର ରୂପ ଏବଂ ଶେଷ ପୁସ୍ତକଟିରେ ବିଶେଷ ଭାବେ ଅଲୋଚିତ ହୋଇଛି ଓଡ଼ିଆ ଭାଷାରକ୍ଷା ଅନ୍ଦୋଳନର ଇତିହାସ । ମନ ମୋହନ ମିଶ୍ରଙ୍କ 'ଚଳନ୍ତି ଭାଷାର ପ୍ରୟୋଗ' (୧୯୭୧) ରେ ଓଡ଼ିଆ ଭାଷାର ବିଶେଷ୍ୟ, ବିଶେଷଣ, କ୍ରିୟା, କାରକ ଓ ବିଭକ୍ତିର ଲୋକପ୍ରଚଳିତ ବ୍ୟବହାର ପରିପେକ୍ଷୀରେ ଗଦ୍ୟଭାଷା ଫକୀରମୋହନ ଓ

ପ୍ୟାରୀମୋହନଙ୍କ ପରବର୍ତ୍ତୀ ସମୟରେ ଗଦ୍ୟ ରୀତିକାବ୍ୟ ପରି ରୀତିଗଦ୍ୟରେ ପରିଣତ ହୋଇଛି ।

'ଓଡ଼ିଆ ଭାଷାର ରୂପତତ୍ତ୍ୱ' (୧୯୭୨) ରେ ବେଣୀମାଧବ ପାଢ଼ୀ, ଗୋପାଳ ଚନ୍ଦ୍ର ମିଶ୍ରଙ୍କ 'ଭାଷା ବିଜ୍ଞାନ ପରିଚୟ' (୧୯୭୩), ନୀଳମଣି ମିଶ୍ରଂକ 'ପ୍ରାଚୀନ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ', (୧୯୭୬) ଡ଼: ସଚ୍ଚିଦାନନ୍ଦ ମିଶ୍ରଙ୍କ 'ଭାଷାତତ୍ତ୍ୱ ସମୀକ୍ଷା' (୧୯୭୦), ଧନେଶ୍ୱର ମହାପାତ୍ରଙ୍କ 'ଓଡ଼ିଆ ଧ୍ୱନିତତ୍ତ୍ୱ ଓ ଶବ୍ଦ ସମ୍ଭାର' (୧୯୭୬), 'ମୌଳିକ ଓଡ଼ିଆ ଭାଷାତତ୍ତ୍ୱ' (୧୯୮୦) ରେ ଓଡ଼ିଆ, ଧ୍ୱନି, ଶବ୍ଦ, ରୂପ, ଅର୍ଥ, ଲିପି, ଓଡ଼ିଆ ଭାଷାର ଉପଭାଷା, ବିଭିନ୍ନ ଭାଷାର ପ୍ରଭାବ ଉଲ୍ଲିଖିତ । ଧନେଶ୍ୱର ମହାପାତ୍ରଂକ 'ସାରଳା ମହାଭାରତରେ ଭାଷାତାତ୍ତ୍ୱିକ ଅଧ୍ୟୟନ' (୧୯୭୨) ଏକ ଉଲ୍ଲେଖନୀୟ କାର୍ଯ୍ୟ । ୧୯୮୧ରେ ନୀଳାଦ୍ରି ଭୂଷଣ ହରିଚନ୍ଦନଙ୍କ 'ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା ବ୍ୟାକରଣ' ଓ ୧୯୮୨ରେ ସତ୍ୟନାରାୟଣ ରାଜଗୁରୁଙ୍କର ଶିଳାଲେଖ ଓ ଲିପି ସଂପର୍କିତ ପ୍ରବନ୍ଧ, ଖଗେଶ୍ୱର ମହାପାତ୍ରଂକ 'ଓଡ଼ିଆ ଭାଷାରେ ପର୍ତ୍ତୁଗୀଜ୍ ପ୍ରଭାବ' ଓଡ଼ିଶା ସାହିତ୍ୟ ଏକାଡ଼େମୀର 'ଓଡ଼ିଆ ଲିପି ଓ ଭାଷା' ସଂକଳନରେ ପ୍ରକାଶ ପାଇଛି ।

'ଓଡ଼ିଆ ଭାଷାରେ ଦ୍ରାବିଡ଼ ପ୍ରଭାବ' (୧୯୮୧) ରେ ଅଧ୍ୟାପକ ପୀତାମ୍ବର ପ୍ରଧାନ, 'ଓଡ଼ିଆ ଭାଷା ଉପରେ ବୈଦେଶିକ ଭାଷାର ପ୍ରଭାବ' (୧୯୭୩) ନିବଂଧରେ ବାସୁଦେବ ସାହୁ ଦ୍ରାବିଡ଼ ଓ ବିଦେଶୀ ଭାଷାର ପ୍ରଭାବ ଆଲୋଚନା କରିଛନ୍ତି । ଏତଦ୍ ବ୍ୟତୀତ 'ଭାଷା-ବିଜ୍ଞାନର ରୂପରେଖ', 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ' (୧୯୮୨) 'ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ' (୧୯୮୨) 'ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା' (୧୯୮୩) 'ଭାଷା ବିଜ୍ଞାନ ଓ ଭାଷା ବିଜ୍ଞାନୀ' (୧୯୮୭) ଆଦି ପୁସ୍ତକରେ ଭାଷା-ବିଜ୍ଞାନର ସ୍ଥୂଳ ପରିଚୟ, ସଂଜ୍ଞା-ସ୍ୱରୂପ ଭାଷା-ବିଜ୍ଞାନର ବିଭିନ୍ନ ବିଭାଗ, ଧ୍ୱନିତତ୍ତ୍ୱ ଶବ୍ଦତତ୍ତ୍ୱ, ବାକ୍ୟତତ୍ତ୍ୱ, ଅର୍ଥତତ୍ତ୍ୱ, ଓଡ଼ିଆ ଭାଷାର ଉତ୍ପତ୍ତି ଓ ବିକାଶ, ଭାଷା-ପରିବାର, ଭାରତୀୟ ଆର୍ଯ୍ୟଭାଷା, ଶବ୍ଦଭଣ୍ଡାର, ଭାଷାବିଜ୍ଞାନୀ-ମାନଂକର ଆଲୋଚନା କରିଛନ୍ତି ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ବୃତ୍ତି ପ୍ରଦାନ କରାଯାଇ 'ଦକ୍ଷିଣ ଓଡ଼ିଶାର କଥିତ ଓଡ଼ିଆ ଭାଷା' (୧୯୮୮, ଡ଼ଃ: ସତ୍ୟ ପ୍ରସାଦ ଦାସ) ଓ 'ପଶ୍ଚିମ ଓଡ଼ିଶାର କଥିତ ଓଡ଼ିଆ ଭାଷା' (୧୯୮୮, ଗୋପବନ୍ଧୁ ଦାସ) ନାମରେ ଦୁଇଟି ପୁସ୍ତକ ଉପଭାଷା ଉପରେ ରଚିତ । ଏହା ଉକ୍ତ ଅଂଚଳର ଭାଷାର ଯଥାର୍ଥ ଭାଷାବୈଜ୍ଞାନିକ ଆଲୋଚନା ନ ହେଲେ ହେଁ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଭାଷାଚର୍ଚ୍ଚା ନିମନ୍ତେ ଏପରି ସଚେତନତା ଓ ପ୍ରୟାସ ପ୍ରଶଂସନୀୟ । ଏତଦ୍ ବ୍ୟତୀତ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସମ୍ବଲପୁରୀ ଭାଷାର ଶବ୍ଦକୋଷ ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଙ୍କ ଦ୍ୱାରା ସଂକଳିତ । ଓଡ଼ିଆ ଗବେଷଣା ପରିଷଦ ଦ୍ୱାରା ୧୯୮୯ରେ ପ୍ରକାଶିତ 'ଶୈଳୀ ବିଜ୍ଞାନ ଗ୍ରନ୍ଥ' ଏ ଦିଗରେ ଏକ ନୂତନ ଆଲୋଚନା । ଓଡ଼ିଆ ଭାଷାରେ ଭାଷାବିଜ୍ଞାନର ଯତ୍କିଞ୍ଚିତ୍ ଆଲୋଚନା ଉପଲବ୍ଧ ହେଉଥିଲେହେଁ ଶୈଳୀବିଜ୍ଞାନ ଉପରେ ଏହା ପ୍ରଥମ ଆଲୋଚନା କହିଲେ ଠିକ ହେବ । ଏ ଦିଗଟି ଓଡ଼ିଆ ଭାଷାରେ ଉପେକ୍ଷିତ । ୧୯୯୪ ରେ 'ଭାଷାତତ୍ତ୍ୱର ରୂପଚିତ୍ର'

ଡ଼: ନଟବର ଶତପଥୀଙ୍କର ଭାଷାତତ୍ତ୍ୱ ସଂପର୍କିତ ପୁସ୍ତକ ।

'ବାଂଲା, ଅସମୀୟା ଓ ଓଡ଼ିଆର ଉପଭାଷାର ଭୌଗୋଳିକ ଜରିପ' (୧୯୮୯) ଡ଼ି.ଲିଟ୍ ନିବଂଧରେ ନିଖିଳେଶ ପୁରକାଇତ ପୂର୍ବାଞ୍ଚଳର ତିନୋଟି ଆନ୍ତରିକ ସଂପର୍କ ଥିବା ଭାଷାର ଉପଭାଷାଗୁଡ଼ିକର ଆଲୋଚନା କରିଛନ୍ତି । ହରେକୃଷ୍ଣ ମହାତାବ ଏହାର ଅନ୍ୟତମ ପରୀକ୍ଷକ ଥିଲେ । କଟକୀ, ବାଲେଶ୍ୱରୀ, ଗଞ୍ଜାମୀ ଓ ସମ୍ବଲପୁରୀକୁ ଉପଭାଷା ରୂପେ ଗ୍ରହଣ କରାଯାଇଛି । ଏ ସମସ୍ତ ଉପଭାଷାର ଯଥାଯଥ ଲକ୍ଷଣ ଓ ସ୍ୱରୂପ ନିର୍ଦ୍ଧାରିତ ହୋଇନି । ଶ୍ରୀମତୀ କୃଷ୍ଣା ଭଟ୍ଟାଚାର୍ଯ୍ୟଙ୍କର Bengali Oriya Verb Morphology - A contrastive study (୧୯୯୩) ରେ ଉଭୟ ଭାଷାର ଧ୍ୱନି ପରିଚୟ, ଧ୍ୱନିର ଅଧ୍ୟୟନ ସହିତ କ୍ରିୟାପଦର ସାଦୃଶ୍ୟ ଓ ପାର୍ଥକ୍ୟର ବୈଜ୍ଞାନିକ ଅଧ୍ୟୟନ ହୋଇଛି ।

ଏ ସମସ୍ତ ପ୍ରକାଶିତ ପୁସ୍ତକ ମଧ୍ୟରେ ଅନେକ ନିବଂଧ ଉଲ୍ଲିଖିତ । ଏହି ନିବଂଧ ବ୍ୟତୀତ ଉତ୍କଳ, ବିଶ୍ୱଭାରତୀ, ବ୍ରହ୍ମପୁର, ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଅଧୀନରେ ଅନେକ ଗବେଷକ ଭାଷାତତ୍ତ୍ୱ ଉପରେ କାର୍ଯ୍ୟକରି ଡିଗ୍ରୀ ପ୍ରାପ୍ତ ଓ ଅନେକ ଗବେଷଣାରତ । ଦେବେନ୍ଦ୍ର ନାଥ ମହାନ୍ତିଙ୍କର 'ଓଡ଼ିଆ ଶବ୍ଦବନ୍ଧ ଏକ ଅଧ୍ୟୟନ' (୧୯୭୬), ଚନ୍ଦ୍ରଶେଖର ମହାପାତ୍ରଙ୍କର ଅଷ୍ଟାଦଶ ଶତାବ୍ଦୀର 'ଓଡ଼ିଆ ଏକ ଭାଷାତାତ୍ତ୍ୱିକ ଅଧ୍ୟୟନ' (୧୯୮୦-୮୧), କୈଳାସ ଚନ୍ଦ୍ର ଦାସଙ୍କର 'ଓଡ଼ିଆ ଶବ୍ଦାର୍ଥ ତତ୍ତ୍ୱ' (୧୯୮୩), ଖଗେଶ୍ୱର ମହାପାତ୍ରଙ୍କର 'Desia A tribal Oriya Dialect of Koraput, Orissa' (୧୯୭୧), ହର ପ୍ରସାଦ ମିଶ୍ରଙ୍କର 'ଓଡ଼ିଆ ଭାଷା ଉପରେ ଇଂରାଜୀ ଭାଷାର ପ୍ରଭାବ' (୧୯୮୪), ସନ୍ତୋଷିନୀ ପଣ୍ଡାଙ୍କର 'ବଲାଙ୍ଗୀର ଉପଭାଷା : ଏକ ଅଧ୍ୟୟନ' (୧୯୮୪), ପଞ୍ଚାନନ ମହାନ୍ତିଙ୍କର 'Aspects of Oriya Language : Phonology and Morphology'(୧୯୮୬) ନିବଂଧ ଆଦି ଓଡ଼ିଆ ଭାଷାର ବିଭିନ୍ନ ଦିଗ ଉପରେ ଲିଖିତ ।

ଭାଷା-ବିଜ୍ଞାନ ଦୃଷ୍ଟିକୋଣରୁ ଓଡ଼ିଆ ଭାଷାର ଅଧ୍ୟୟନ ଯଥେଷ୍ଟ ହୋଇନାହିଁ । ଓଡ଼ିଆ ଭାଷାର ଅନେକ ଦିଗ ଓ ବିଭାଗ ଏବେ ମଧ୍ୟ ଅଛୁଆଁ ହୋଇ ରହିଯାଇଛି । ଅନ୍ୟ କୌଣସି ପ୍ରଧାନ ଭାରତୀୟ ଭାଷାଚର୍ଚ୍ଚା ତୁଳନାରେ ଓଡ଼ିଆ ଭାଷାର ଆଲୋଚନା ପରିମାଣ ଓ ଗୁଣାତ୍ମକ ଦୃଷ୍ଟିରୁ ସ୍ୱଳ୍ପ, ଏହା ନିଃସନ୍ଦେହରେ କୁହାଯାଇପାରେ । ଭାଷାବିଜ୍ଞାନ ଏକ ଅପେକ୍ଷାକୃତ କଠିନ ତଥା ବୈଜ୍ଞାନିକ ବିଦ୍ୟା । ଭାଷାବିଜ୍ଞାନରେ ତାଲିମପ୍ରାପ୍ତ କତିପୟ ଓଡ଼ିଆ ଭାଷାତତ୍ତ୍ୱବିଦଂକ ଭାଷା ଆଲୋଚନା ଗୁଣାତ୍ମକ ଦୃଷ୍ଟିରୁ ହେଉଥିଲେହେଁ ଅନେକ ଆଲୋଚନା କେବଳ ପରିମାଣ ଦୃଷ୍ଟିରୁ ପରିଲକ୍ଷିତ ହୁଏ । ଏଣୁ ଅନେକ ନିନ୍ଦା ଓ କ୍ଷୋଭ ପ୍ରକାଶ କରନ୍ତି । ଓଡ଼ିଆଭାଷା ଚର୍ଚ୍ଚାର ପ୍ରାଥମିକ ପର୍ଯ୍ୟାୟରେ ଅନେକ ମୌଳିକ ବୈଜ୍ଞାନିକ ଭାଷା ଆଲୋଚନା ହୋଇଛି । ସେମାନଙ୍କର ଭାଷା ବିଜ୍ଞାନଗତ ଯଥାର୍ଥ ତାଲିମ ନଥିଲା ସୁତରାଂ ଉନ୍ନତ ମାନର ବୈଜ୍ଞାନିକ ଆଲୋଚନା ପାଇଁ ଆବଶ୍ୟକ ପ୍ରଜ୍ଞା, ପ୍ରଚେଷ୍ଟା, ଗଭୀର ଅଧ୍ୟୟନ, ଗବେଷଣା ମନୋବୃତ୍ତି ଓ ଉପଯୁକ୍ତ ତାଲିମ ।

ଓଡ଼ିଆ ଭାଷାଚର୍ଚ୍ଚାର ଇତିହାସରେ ଜନ୍ ବୀମ୍ସ ଏକ ସ୍ମରଣୀୟ ବ୍ୟକ୍ତିତ୍ୱ । ଏହି ଅବସରରେ ତାଂକ ପ୍ରତି ଗଭୀର ଶ୍ରଦ୍ଧାପୂର୍ବକ ତଥା ପାଠକମାନଂକ ଅନୁସନ୍ଧିତ୍ସା ନିମନ୍ତେ ଜନ୍ ବୀମ୍ସଙ୍କର ସେହି କ୍ଷୁଦ୍ର ତଥା ଅମୂଲ୍ୟ ପ୍ରବନ୍ଧଟିର କିଛି ଅଂଶ ଉଦ୍ଧାର କରାଯାଇପାରେ ।

Proceedings of the Asiatic Society on the Relation of the Uriya to the other Modern Aryan Languages - by John Beams Esq. B.C.S,. Balasore.

( Received 6th April. 1870, read 4th May 1870)

A book has recently been published by babu Kantichandra Bhattcharya, a pandit in the Government School at Balasore, under the title ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେଁ, Uriya not an independent language. This little work, though profoundly dostitute of philological arguments, has created some stir among the natives of the province, who are some what disgusted at finding their native language treated as a mere corruption of Bengali. The local excitement on the subject, has led me to look into the question more closely than I had before, though in the course of reading for my 'Comparative Grammar of the Modern Aryan languages' I had come upon many peculiarities, both of phone tics and inflection, which had caused me long ago to make up my mind as to the right of the Uriya to be considered a language perse. It may not be uninteresting to others to see an attempt made to analyze the structure of this little known form of speech and at the risk of anticipating statements which would give to my grammar an air of greater novelty, I venture to put down a very brief outline of my views.

× × ×

In the first place to mention is to refute the argument that because in any modern printed work in Uriya sixty words out of a hundred are identical with Bengali, therefore they are not two, but one

language. The same argument might with equal justice be applied to Marathi

× × ×

Without going through the whole line of pronouns which would take too much space, I would here merly call attention to the facts that of all these forms, Uriya is not more closely allied to Bengali than to any of the other sister languages, that the Uriya form is quite as genuine a descendant of the Sanskrit as any of them, and lastly the Uriya form having retained elements which the Bengali has lost, It is absurd to say that the former is derived from the later.

ଦ୍ରଷ୍ଟବ୍ୟ :- ଏହି ଇଂରାଜୀ ଉଦ୍ଧୃତାଂଶରେ ବ୍ୟବହୃତ ଓଡ଼ିଆ ଲିପି ସ୍ଥାନରେ ମୂଳ ଲେଖାରେ ବଂଗଳା ଲିପି ବ୍ୟବହୃତ

ପ୍ରାଧ୍ୟାପିକା, ଓଡ଼ିଆ ବିଭାଗ
ଶାନ୍ତିନିକେତନ

# FOLKLORE STUDIES IN ORISSA

**Shyam Sundar Mohapatra,**

Folklore flourished since the dawn of civilization though it waited, for centuries, for the so called folklorists to appear and treat it as a special branch of learning. It had a rich heritage in India and was used not only in practical life but also in sophisticated works of art and treatises. This position continued till the English came and started collection and study of folklore which was soon followed up by native scholars. During the British period both the English and Indian scholars, taken together, have laid a sound foundation of the study of the subject. In the post-independence period, however, the activities have been intensified with general awareness of its importance and support from the Government. In recent years the study is becoming more and more sophisticated with introduction of modern equipments and methodologies. The phenomenon is common to all Indian regions though achievements vary in degree.

## PRE-INDEPENDENCE PERIOD :

Like other parts of India, Orissa is rich in folklore. Though none bothered about its collection and study before the English scholars, it is found that folklore has been incorporated in abundance in the epics and kavyas of ancient Oriya literature. The great epic Mahabharata by Sarala Das (15th C.) embodies folklore to such an extent that it can, very well, be termed as a folk-epic. It will not be imporper if Sarala Das, the author, is accepted as the first collector of Orissan folklore. Folk-elements found a prominent place in the medieval kavyas as well. Dramatis personae and themes were very frequently drawn from the folk-world. Some kavyas such as 'Sasisena' and 'Kanchikaveri' (18th C.) were completely designed after folktales and ballads prevailing then.

During the period of renaissance on Western impact, too, poets had a tendency to make use of folk-elements in their poems and depict rural life. Some poets worth mentioning are Radhanath Ray, Gangadhar Meher and Nandakishore Bal. The novels of Fakirmohan are also replete with folk-elements.

The English scholar and administrator who first took interest in Orissan folklore was John Beams. He was the then Collector of Balasore. The folk-materials which attracted him most were the superstitions and charms prevailing among the peasants. His article 'Folklore of Orissa' appeared in Indian Antiquary in the year 1872. The author, at the outset, records his impressions on the life and behaviour of Orissan peasants. To him, they were full of superstitions and 'shy of imparting these ideas to strangers'. He attributes the reason to the 'isolation' of the land from outside world for a long period.

Beams is preoccupied with the belief of witchcraft. He devotes a few paragraphs to record the habits and habitat of the so called witches, the symptoms of the person possessed by them and also the mantras that are uttered to counteract their spell. He also records some traditions and taboo relating to construction of houses, effects of coming across an empty vessel while going out on an auspicious work,touch of a broom stick and so on.

Beams did not attempt at classifying, co-ordinating or analysing the folklore which he collected. He made his intention clear in the essay that he did not wish to complicate his simple remarks 'but to' string them together' as he heard them noting here and there curious parallelism' between them and those of the English peasantry'. He wanted to collect folk-material because it was necessary for his administration . He believed that ' human nonsense, like human sense is very much the same everywhere and it is only because in ruling men one must take their nonsense into consideration quite earnestly as their sense that those scraps of folklore are worth recording at all.

Though Beams laid the foundation of collection and study of Orissan folklore, his contribution is limited to one article only. However he inspired some native scholars who developed an interest in the subject. Fakirmohan, the pioneer Oriya novelist, was one of his companions at Balasore. Beams discussed matters relating to folklore with him. Perhaps Fakirmohan drew inspiration from him and made free use of such materials, especially proverbs, in his novels.

Another English administrator who took interest in the subject was T.E Ravenshaw, the then Commissioner of Orissa. Pandit

